# ଜାନକୀଶ ବିଳାସ

ସଂପାଦନା :—ଡ଼କ୍ଟର ସୁଦର୍ଶନ ଆଚାର୍ଯ୍ୟ

ବାଲ୍ମୀକସ୍ତୁ ଶମନୋରଣମଥିତଃ ସୀତାରମାସମ୍ଭବଃ
ସୁଗ୍ରୀବାମରଭୂରୁହୋଽଙ୍ଗଦଗଜଃ ସୌମିତ୍ରିଚନ୍ଦ୍ରୋଦୟଃ
ବାତୋତ୍ପନ୍ନମନୋବିଭୀଷଣସୁଧଃ ପୌଲସ୍ତ୍ୟ ହାଲାହଲଃ
ଶ୍ରୀ ରାମାୟଣ ଦୁଗ୍ଧସିନ୍ଧୁରନଘଂ ଭୂୟାତ୍ ଜଗତ୍‌ଶ୍ରେୟସେ ॥

କୌଶଲ୍ୟା ଜଠରାଳବାଳ କଳିତଃ ସିକ୍ତୋଦଶସ୍ୟନ୍ଦନ-
ସ୍ନେହାଭିର୍ବିତତସ୍ତ ସୋଦରମହାଶାଖାଭିରଭ୍ୟୁନ୍ନତଃ
ରକ୍ଷୋବ୍ରାତମହାଦାବତାପଶମନଃ ସୀତାଲତାଲିଙ୍ଗିତ-
ଶ୍ଳାଘ୍ୟାର୍ଥିଶ୍ରମନୁଦ୍‌ଦଦାତୁ ସୁଫଳଂ ଶ୍ରୀରାମକଳ୍ପଦ୍ରୁମଃ ॥

( ଯତିରାଜଃ )

ତନ୍ନାମାମୃତପାନ-ପୁଷ୍ଟ-ହୃଦୟୋ ନିତ୍ୟଂ ତଦୀୟାସ୍ତବ
ସ୍ତୁହାସ୍ରମ୍ଭସମାହିତାମରତରୁ ସ୍ତଦ୍ଭକ୍ତ ଶୋକନୁତ୍
ତତ୍‌କୈଙ୍କର୍ଯ୍ୟପରାୟଣସ୍ତ୍ରେହନୁମତ ପ୍ରେଷ୍ୟସ୍ତଦାଜ୍ଞାହୃତା-
ଶେଷାରଣ୍ଡ କୁଠୋଲ୍ଲୁନାତୁ ଦୁରିତାରଣ୍ୟଂ ସମୀରାତ୍ମଜଃ ॥

( ଯତିରାଜଃ )

# ଜାନକୀଶ ବିଳାସ

## ପ୍ରଥମ ଅଧ୍ୟାୟ

ଜୟଶ୍ରୀ ଦଶରଥ ଗରିଷ୍ଠ । ଜୟ କନକ ଜିତପଟ ॥୧॥
ଜୟ କୋଶଳଦେଶବରିଷ୍ଠ । ଜୟ ବିଜିତ ଦଶକଣ୍ଠ ॥୨॥
ଜଳଜ ଜିତ ଯା ଆନନ । ଜଳଜାସନଙ୍କ ବନ୍ଦନ ॥୩॥
ଯଜ୍ଞମଣ୍ଡଳ କଉଶିକ । ଯାଗର ରକ୍ଷଣ କାରକ ॥୪॥
ଜିଷ୍ଣୁ ପ୍ରମୁଖ ଦେବଯାକ । ଯାହାଙ୍କ ଚରଣେ ସେବକ ॥୫॥
ଜଳ ସହିତ ଅମ୍ବୁଦାଳି । ଜିଣିଛି ଯାହା ଅଙ୍କଷାଳି ॥୬॥
ଯାହାଙ୍କ ପାଦପଦ୍ମ ନୀର । ଜଟାରେ ଧରି ଗୌରୀବର ॥୭॥
ଜଗତେ ହେଲେ ଅଧିକାରୀ । ଯୋଗିଏ ନପାନ୍ତି ସେ ବାରି ॥୮॥
ଯେଉଁ ଏମନ୍ତ ରାମ ତୁମ୍ଭ । ଜଳଜ ପଦେ ନାହିଁ ଭାବ, ॥୯॥
ଜ ଆଦ୍ୟ କରି ପରକାଶ । ଜାନକୀ ଈଶଙ୍କ ବିଳାସ ॥୧୦॥
ଜଳ୍ପିବି କେଉଁ ପରକାର । ଜୁଗୁପ୍‌ସା ଏକା ହେବ ମୋର ॥୧୧॥
ଜଗତ ପାପିଙ୍କ ପାବନ । ଯୋ ହେତୁ ହୋଇଛ ଆପଣ ॥୧୨॥
ଜାଣି ସେ କଥା କରି ଧୃତ । ଜନ୍ମାଇ ଅଛି ଏହା ମତ ॥୧୩॥
ଜିହ୍ମଗଅରି ସ୍କନ୍ଧ ଚଢ଼ା । ଜିଷ୍ଣୁ ହୃଦୟାନନ୍ଦବଢ଼ା ॥୧୪॥
ଜଳେ ଜଣାନ୍ତେ ଗଜପୀଡ଼ା । ଜାଳିଲ ତାର ଭୟ ଭିଡ଼ା ॥୧୫॥
ଯାହାଙ୍କୁ ଅଜାମିଳ ବୁଢ଼ା । ଜପି ହୋଇଲେ ପାପଛଡ଼ା ॥୧୬॥
ଜଡ଼ ମୁଁ ହୋଇ ସେହି ନାମ । ଜପନ୍ତେ ନୋହିବ କି ଧର୍ମ ॥୧୭॥
ଜାଣିଲି ଏହା ଭଲି ଭଲି । ଜାନକୀ ଈଶନାମ ବୋଲି ॥୧୮॥
ଯତନେ ଭାଷା ପରବନ୍ଧେ । ଯେବେ ମୁଁ ରଚିବି ସ୍ୱଚ୍ଛନ୍ଦେ ॥୧୯॥
ଜାନକୀ କାନ୍ତଙ୍କ ଚରିତ । ଯାମିନୀ ଦିବା ହେବ ସ୍ମୃତ ॥୨୦॥
ଜନ୍ମ ମରଣ ସିନ୍ଧୁ ମୁହିଁ । ଯିବି ତେବେ ବା ପାରି ହୋଇ ॥୨୧॥
ଜନମ ଆଦ୍ୟ ଆଜ ଯାଏ । ଜଗତ ମଣି ସତ୍ୟ ପାଏ ॥୨୨॥

---

(୫) ଜିଷ୍ଣୁ—ଇନ୍ଦ୍ର । (୧୪) ଜିହ୍ମଗଅରି—ଗରୁଡ଼ ।

ଜଞ୍ଜାଳ ଜାଲକାରେ ପଡ଼ି । ଜୀବନ ଯିବ ମୋର ଛାଡ଼ି ॥୨୩॥
ଯୋଗ ପଣ୍ଡିତ ହେ ସୁଜନେ । ଜଡ଼ ମୁଁ ଅଟେ ତ ଭୁବନେ ॥୨୪॥
ଜାଣିଲେ ଏ ଗୀତର ଦୋଷ । ଜନେ ନ କରିବ ପ୍ରକାଶ ॥୨୫॥
ଜଳ୍ପିବ ଏ କଥା ବରୃର । ଯେ ଯାହା ବୁଦ୍ଧି ଅନୁସର ॥୨୬॥
ଯିବାକୁ ତର ଭବାବଧି । ଜଗତେତ ଗୀତ କରେ ସିଦ୍ଧି ॥୨୭॥
ଜୟ କନ୍ଦର୍ପ ଦର୍ପହାର । ଜୟ ପାର୍ବତୀ ପ୍ରୀତ (ଅ)କାର ॥୨୮॥
ଜାହ୍ନବୀଧର ଶୂଳପାଣି । ଯାଗନାଶକ ଅନ୍ଧକାରି ॥୨୯॥
ଜଳଜ ନେତ୍ରାନ୍ତ ଭ୍ରମର । ଯେବେ ପଡ଼ିବ ମୋହିଠାର ॥୩୦॥
ଜାନକୀ କ୍ଷଣ ରସାର୍ଣ୍ଣବ । ଯିବି ମୁଁ ପାର ହୋଇ ଜବ ॥୩୧॥
ଜୟ ପବନଦେବବେଟା । ଜାମ୍ବୁନଦାଭ, ଗାତ୍ର ଛଟା ॥୩୨॥
ଜାନକୀ ସନ୍ତାପିତ କଣ୍ଠା । ଜନ୍ୟେ ନାଶିଲ ଗର୍ଷ ମୋଠା ॥୩୩॥
ଜଣାଉଅଛି ତାଙ୍କୁ ଯେବେ । ଜଡ଼ ମୁଁ ମୋରେ କୃପା ଲଭେବ ॥୩୪॥
ଯେବେ କି ହୋଇବ ଭ୍ରମର । ଜଣିମି ଗୀତ ପାରାବାର ॥୩୫॥
ଜାନକୀ କ୍ଷଣ ବଳାସାଖ୍ୟ । ଯଥା ନୟନେ ହେବେ ଲେଖ୍ୟ ॥୩୬॥
ଝୁଗୁ ନବମାକ୍ଷରେ ପଦ । ଜ ବର୍ଣ୍ଣ ସ୍ଥିତ ଆଦ୍ୟ ମଧ ॥୩୭॥
ଜଗତନାଥଙ୍କ ଅଗ୍ରଜ । ଜାୟା ସଂଖ୍ୟାରେ ପଦପୁଞ୍ଜ ॥୩୮॥
ଯୁଗ ବେଦାନ୍ତ ଶିତାଧ୍ୟାୟ । ଯତନେ ହୋଇଥିବ ଶେଷୋଦୟ ॥୩୯॥
ଜାହ୍ନବୀଧର ଧନେ ସୁଖେ । ଜ୍ୟାଧର କୈଳାସର ଶିଖେ ॥୪୦॥
ଜାହ୍ନବୀଖେ କତ ରବଶତ । ଯୋ ଗୃହ ସେ ହୋଇଛି ପୂତ ॥୪୧॥
ଯୁତ ଯେ ମଧ୍ୟେ ଏକ ପିଢ଼ା । ଜାମ୍ବୁନଦରେ ସେହ୍ବ ଢଡ଼ା ॥୪୨॥
ଜଳଜାସନେ ବସି ତହିଁ । ଜପ କରନ୍ତି ନିଷ୍ଠା ହୋଇ ॥୪୩॥
ଯୋଗିଏ ସବୁଛନ୍ତି ପାଶ । ଯେଉଁ ଏମନ୍ତ ବ୍ୟୋମକେଶ ॥୪୪॥
ଜୟନ୍ତୀ ତାଙ୍କ ବାମେ ରହି । ଜଣାନ୍ତି ଭକ୍ତଭବ ବହି ॥୪୫॥
ଜୟ ହେ ଜଗତନିବାସି । ଜାୟା ମୁଁ ତୁମ୍ଭ ପୁଣି ଦାସୀ ॥୪୬॥
ଜୀମୂତ ଶ୍ୟାମ ରାମଲୀଳା । ଜଳପ ମୋତେ କେଣି ମାଳା ॥୪୭॥
ଜଗତ ଜନନୀ, କପର । ଜନ୍ମିଲେ ସୀତା ନାମ ଧର ॥୪୮॥
ଜୀବନାଧାର ମୂର୍ତ୍ତି ରାମ । ଜ୍ୟା ତଲେ ହେବାର ଜନମ ॥୪୯॥

---

(୩୩) ଜନ୍ୟେ—ଯୁଦ୍ଧରେ । (୪୦) ଜ୍ୟାଧର—ପର୍ବତ ।
(୪୩) ଜଳାଜସନେ—ପଦ୍ମାସନରେ । (୪୯) ଜୀବନାଧାର—ମେଘ ।

ଯକ୍ଷାଶ ବିଶ୍ୱାମିତ୍ର ସଙ୍ଗେ । ଯିବାର ସିଦ୍ଧାଶ୍ରମ ରଙ୍ଗେ ॥୫୦॥
ଜଗତ ହିଂସିକା ତାଡ଼କୀ । ଜୀବକୁ ନେମା ଶର ଯୋଖି ॥୫୧॥
ଯୋଡ଼ଏ ଶରେ ସୁବାହୁକୁ । ଯେ ରୂପେ କଲେ ବିନାଶକୁ ॥୫ ॥
ଜଳଧି ଜଳେ ମାରିଚର । ଯେମନ୍ତେ କରାଇଲେ ଘର ॥୫୩॥
ଯୋଗୀଶ କଉଶିକଙ୍କର । ଯାଗକୁ ରକ୍ଷା କରିବାର ॥୫୪॥
ଯିବା ମାର୍ଗରେ ଗୌତମଙ୍କ । ଜାୟାଙ୍କୁ କରିବାର ମୋକ୍ଷ ॥୫୫॥
ଜନକ ପୁରେ ଶମ୍ଭୁ ଚାପ । ଜ୍ୟା ଦେଇ କରିବାର ଲୋପ ॥୫୬॥
ଜାନକୀ ହେବାର ବିବାହ । ଜାମଦଗ୍ନ୍ୟଙ୍କ ବଳକ୍ଷୟ ॥୫୭॥
ଯେଉଁ ରୂପରେ ତହୁଁ ରାମ । ଯାନେ ଆସିଲେ ନିଜ ଗ୍ରାମ ॥୫୮॥
ଯୁବରାଜତ୍ୱ ତାହାଙ୍କର । ଯେ ରୂପେ ଭଙ୍ଗ ହେଲ ଖର ॥୫୯॥
ଜାୟାସାନୁଜ ସଙ୍ଗେ ଧରି । ଜାଙ୍ଗଲେ ହୋଇଲେ ବିହାରୀ ॥୬୦॥
ଜନ ହିଂସକ ବିରାଧର । ଜୀବନ ବାଣରେ ନେବାର ॥୬୧॥
ଜଳଧିବାଧି ବାକ୍ୟେ ରାମ । ଯିବାର ପଞ୍ଚବଟୀ ବନ ॥୬୨॥
ଜାଣନ୍ତେ ସୂର୍ପଣଖା ଯୋଷା । ଜରେ ଛେଦିବା କର୍ଣ୍ଣ ନାଶା ॥୬୩॥
ଯୁଦ୍ଧକୁ ଆସନ୍ତେ ଖରାଦି । ଜୀବନେ ମାରି ଶରେ ରୁନ୍ଧି ॥୬୪॥
ଜାୟା ବଚନୁ ଶାମଳାଙ୍ଗ । ଯିବାର ମାରି ହେମ ମୃଗ ॥୬୫॥
ଯାଚକ ବେଶରେ ରାବଣ । ଜାନକୀ କରିବା ହରଣ ॥୬୬॥
ଜଟାୟୁ କହିବା ଉଦନ୍ତ । ଯେ ରୂପେ କବନ୍ଧର ହତ ॥୬୭॥
ଯୋଗିନୀ ଶବରୀ ଦର୍ଶନ । ଯିବାର ଋଷ୍ୟମୂକ ପୁଣ ॥୬୮॥
ଜ୍ୟାଦେବ ରୂପେ ବାତ ଗୃଠ । ଯେପରି ହେଲେ ରାମ ଭେଟ ॥୬୯॥
ଜ୍ୱଳନ ରଖି ରବିସୁତ । ଜିତ୍ୱର ରାମେ ହେବା ମିତ ॥୭୦॥
ଜିଷ୍ଣୁ ସୁତଙ୍କୁ ମିତ୍ରଛଳେ । ଜରେ ନାଶିବା ରାମ ହେଳେ ॥୭୧॥
ଜ୍ୟାପତି ହେବା କୀଶୋତ୍ତମ । ଯିବାର ମାଲ୍ୟବନ୍ତ ରାମ ॥୭୨॥
ଜମାଇ ସୈନ୍ୟ କପିପତି । ଜାନକୀ ଖୋଜାଇବା ରୀତି ॥୭୩॥
ଜଳଧି ଲଙ୍ଘି ବାତୋଦ୍ଭବ । ଜ୍ୟାପୁତ୍ରୀ କରିବାର ଠାବ ॥୭୪॥
ଯାତୁଧାନଙ୍କୁ ଦେଇ ଶଙ୍କା । ଜ୍ୱଳନେ ପୋଡ଼ିବାର ଲଙ୍କା ॥୭୫॥

---

(୬୨) ଜଳଧିବାଧି—ଅଗସ୍ତ୍ୟ । (୭୦) ଜ୍ୱଳନ—ଅଗ୍ନି, ଜିତ୍ୱର—ଜୟଶୀଳ । (୭୧) ଜିଷ୍ଣୁ ସୁତ—ବାଳି । (୭୨) ଜ୍ୟାପତି—ରାଜା, କୀଶୋତ୍ତମ—ସୁଗ୍ରୀବ ।

ଜଳ ନିଧିକି ଲଂଘି ପୁଣି । ଯଥା ଆସିଲେ ହନୁମାନ ॥୭୬॥
ଜାନକୀ ତଦନ୍ତ ଖୋଜର । ଯାବନ୍ତ ରାମେ କରିବାର ॥୭୭॥
ଜାମ୍ବବ ଆଦି କପି ବୃନ୍ଦ- । ଜାକ ଘେନିଣ ରାମଚନ୍ଦ୍ର ॥୭୮॥
ଜଳଧି ବାନ୍ଧି ହେବା ପାରି । ଜନ୍ୟ ଆରମ୍ଭି ଲଙ୍କାପୁରି ॥୭୯॥
ଜନ ହିଂସକ କୁମ୍ଭକର୍ଣ୍ଣ । ଜିଷ୍ଣୁ ଅହିତ ଦଶାନନ ॥୮୦॥
ଯେତେକ ଦୁର୍ଜନ ରାକ୍ଷସ । ଯୁଦ୍ଧରେ କରିବାର ନାଶ ॥୮୧॥
ଜାନକୀ ଜ୍ୱଳନ ପ୍ରବେଶ । ଜମ୍ଭାରି ଆଦି ସ୍ତୁତି ଭାଷ ॥୮୨॥
ଜଳନ୍ତେ ଜାଣି ବୈଶ୍ୱାନର । ଜାନକୀ ରାମଙ୍କୁ ଦେବାର ॥୮୩॥
ଯତି ବସିବା ସାନ ସୁତେ । ଜମାଇ ମନ୍ତ୍ରୀ ଥିଲେ ଯେତେ ॥୮୪॥
ଯବାପୁ କରେ ପୀତାବର । ଜ୍ୟା ପାଳ ଶାର୍ଙ୍ଗୀକ ଦେବାର ॥୮୫॥
ଯାହାର ନାମ ପୁଷ୍ପଯାନ । ଜାୟାକୁ ତହିଁ ବସାଇଣ ॥୮୬॥
ଜାମ୍ବବ ସୁଗ୍ରୀବାଦି ସୈନ୍ୟ- । ଯାକ ବସାଇ ତହିଁ ପୁଣ ॥୮୭॥
ଯିବା କାଳରେ ଅଯୋଧ୍ୟାକୁ । ଜାୟାଙ୍କୁ ଚହ୍ଲାଇ ସ୍ଥାନକୁ ॥୮୮॥
ଯତୀଶ ଭରଦ୍ୱାଜଙ୍କର । ଜୁଷ୍ଟେ ଆଶ୍ରମେ ହୋଇବାର ॥୮୯॥
ଯିବାର ତହୁଁ ନନ୍ଦିଗ୍ରାମ । ଜନନୀ ଶ୍ରୀଗୁରୁ ଦର୍ଶନ ॥୯୦॥
ଜାୟା ସହିତେ ଶ୍ରୀଅଯୋଧ୍ୟା । ଯିବାରେ ହୋଇ ଅତି ଶ୍ରଦ୍ଧା ॥୯୧॥
ଜନକ ହୋଇ ଉଲ୍ଲାସକ । ଯେ ରୂପେ ହେଲେ ଅଭିଷେକ ॥୯୨॥
ଯୁବ ରାଜନ ଭରତଙ୍କୁ । ଯତନେ କରିବା କଥାକୁ ॥୯୩॥
ଯତି ପତିଙ୍କ ସମାଗମ । ଯାମିନୀ ଚରଙ୍କ ଜନମ ॥୯୪॥
ଜଳଧି ଅରି କହିବାର । ଜାନକୀ କରାଇବା ଦୂର ॥୯୫॥
ଜନମ କୁଶ ଲବଙ୍କର । ଯାଇଣ ଶତ୍ରୁଘ୍ନ ବୀର ॥୯୬॥
ଯୁଦ୍ଧରେ ଲବଣର ପ୍ରାଣ । ଯମକୁ କରିବା ପ୍ରଦାନ ॥୯୭॥
ଯେ ଅଶ୍ୱମେଧ ଯାଗାରମ୍ଭ । ଯଥା ଚହ୍ନିଲେ କୁଶଲବ ॥୯୮॥
ଜାନକୀ ପାତାଳ ପ୍ରବେଶ । ଯୋଗୀଶ କାଳ ଦୁରବାସ ॥୯୯॥
ଯେ ରୂପେ ହେଲେ ସମାଗମ । ଯବାପୁ ଲକ୍ଷ୍ମଣ ବର୍ଜନ ॥୧୦୦॥
ଜଙ୍ଗମ ସ୍ଥାବରାଦି ଯେତେ । ଯତି ତାହାଙ୍କୁ ଘେନି ସାଥେ ॥୧୦୧॥
ଯେ ରୂପେ ହେଲେ ସ୍ୱର୍ଗାରୋହ । ଯାବନ୍ତ ମତେ ପ୍ରଭୁ କହ ॥୧୦୨॥
ଜାୟାଙ୍କ ଶୁଣି କରି ବାକ୍ୟ । ଜନ୍ମାଦିବଧି ଶ୍ରୀରାମଙ୍କ ॥୧୦୩॥

---

(୭୯) ଜନ୍ୟ—ଯୁଦ୍ଧ । (୮୫) ଯବାପୁ—କନିଷ୍ଠ ।

ଜଟେଶ ବିସ୍ତାର କରଣ । ଜଳ୍ପନାରମ୍ଭ କଲେ ପୁଣ ।୧୦୪।
ଜୟନ୍ତ-ଜୟନ୍ତୀ ସମ୍ବାଦ । ଜନେ ଶୁଣିଣ ପାପଚ୍ଛେଦ ।୧୦୫।
ଯେଉଁ ଏ ଅନୁକରମଣି । ଜଗତାର୍ତ୍ତିବୁ ତର ଶୁଣି ।୧୦୬।
ଜଡ଼ ଅଭକ୍ତ ଭକ୍ତରାମ । ଯାମିନୀ ଢ଼ବାରେ ଶ୍ରୀରାମ ।୧୦୭।
ଜଳଜପଦେ ଦେଇ ଚିତ୍ତ । ଜଳ୍ପଇ ରାମାୟଣ ଗୀତ ।୧୦୮।

ଇତିଶ୍ରୀ ଜାନକୀଶ ବିଳାସ ରାମାୟଣାନୁକ୍ରମଣିକାୟାଂ ଶିବଶିବା ସଂବାଦେ
ନାମ ପ୍ରଥମ ଅଧ୍ୟାୟଃ

---

## ଦ୍ୱିତୀୟ ଅଧ୍ୟାୟ

### ଜାହ୍ନବୀଧର ଉବାଚ

• ଜାହ୍ନବୀଧର ଏଥୁଅନ୍ତେ । ଜାୟା ଆନନ୍ଦେ ପଚ୍ଚରନ୍ତେ ।୧।
ଜାଣି ତାହାଙ୍କ ଶୁଦ୍ଧ ଚିତ୍ତ । ଜଳ୍ପନ୍ତି ରାମଙ୍କ ଚରିତ ।୨।
ଜ୍ୟେଷ୍ଠଦେବାଧିପତି ଭାରି । ଯାତନା ନ ସହିଣ ଧରି ।୩।
ଯତ୍ନେ ସୁରଭି ରୂପ ହୋଇ । ଜଳଜାସନ ପାଶେ ଯାଇ ।୪।
ଯାଂବନ୍ତ ବାସନାକୁ ଜବେ । ଜଣାକୁ କଲେ ହମ୍ବାରବେ ।୫।
ଜଗତସ୍ରଷ୍ଟା ତାହା ଶୁଣି । ଜମ୍ଭାରି ଆଦି ସୁର ଘେନି ।୬।
ଯାଇ ହୋଇଲେ ପରବେଶ । ଯହିଁ ଶୟନ ପୀତବାସ ।୭।
ଯୋଡ଼ି ଭକ୍ତିରେ ବେନିକର । ଜଣାନ୍ତେ ବ୍ରହ୍ମା ସ୍ତୁତି ଗିର ।୮।
ଜନାରଦନ ତାହା ଶୁଣି । ଜାଗ୍ରତେ କହିଲେ ଏ ବାଣୀ ।୯।
ଜ୍ୟା ଦେବୀ ଘେନିଣ ସଙ୍ଗତେ । ଜନ୍ମ ମିଳିଲି କି ନିମିତ୍ତେ ।୧୦।
ଜଳଜାଳୟାପ୍ରିୟଙ୍କର । ଯତନେ ଶୁଣି ଏହି ଗିର ।୧୧।
ଜଳଜଭବ କରଯୋଡ଼ି । ଜଣାନ୍ତି ଭକ୍ତିଭାବେ ଜଡ଼ି ।୧୨।
ଜଗତାହିତ ଦଶଶିର । ଜଗଦ୍ବହାଂକୁ ହୋଇନ୍ତେ ଭାର ।୧୩।
ଜଣା କରିବା ନିମିତ୍ତରେ । ଜମି ଆସିଲେ ସର୍ବସୁରେ ।୧୪।

---

(୧୦୬) ଅନୁକରମଣି—ଅନୁକ୍ରମଣି । (୪) ସୁରଭି—ଗାଈ ।
(୧୧) ଜଳଜାଳୟାପ୍ରିୟ—ଭଗବାନ୍ । (୩) ଜ୍ୟେଷ୍ଠଦେବାଧିପତି—ରାକ୍ଷସରାଜ । (୧୩) ଜଗତାହିତ—ପୃଥିବୀର କ୍ଷତିକାରକ, ଜଗଦ୍ବହା—ବାସୁକୀ ।

| | | |
|---|---|---|
| ଜନମି ତୁମ୍ଭେ ନରରୂପେ । | ଯୁଦ୍ଧେ ତାହାଙ୍କୁ ମାର କୋପେ | ।୧୫। |
| ଜଗଦୀଶ୍ୱର ସ୍ୱେଚ୍ଛା ରୂପେ । | ଜଣାଣ ଶୁଣିକରି ଆପେ | ।୧୬। |
| ଜୃମ୍ଭାକୁ ମାରଣ କହିଲେ । | ଜାତ ମୁଁ ହେବି ରଘୁକୁଳେ | ।୧୭। |
| ଜାନକୀ ସ୍ୱରୂପେ କମଳା । | ଜନ୍ମିବେ ମିଥିଳା ଅଚଳା | ।୧୮। |
| ଯାଇଣ ତୁମ୍ଭେମାନେ ଏବେ । | ଯେ ଯାହା ପୁରେ ରହ ହବେ | ।୧୯। |
| ଜନାର୍ଦ୍ଦନଙ୍କ ଏମନ୍ତ । | ଜଳ୍ପନ କରି କର୍ଣ୍ଣଗତ | ।୨୦। |
| ଜଗତ୍ସ୍ରଷ୍ଟାଦି ଦେବଆଳି । | ଯେ ଯାହା ସଦନରେ ମିଳି | ।୨୧। |
| ଜମ୍ବାଳଜାକ୍ଷ ବକ୍ଷୁଙ୍କର । | ଜାତ ଇଚ୍ଛିଲେ ମାନସର | ।୨୨। |
| ଜନକ ନୃପତି ଏ ଅନ୍ତେ । | ଯାଗକୁ ଇଚ୍ଛାକରି ଶାନ୍ତେ | ।୨୩। |
| ଜ୍ଞା ଶୁଦ୍ଧାର୍ଥେ ଚଷିବାରୁ । | ଜନ୍ମିଲେ କନ୍ୟାସ୍ୱେ ସୀତାରୁ | ।୨୪। |
| ଜନକ ଋଷି ତାଙ୍କୁ ନେଇ । | ଜାୟାଙ୍କ କୋଳେ ଦେଲେ ଥୋଇ | ।୨୫। |
| ଜେମା ମୋହର ହେଲେ ବୋଲି । | ଯତ୍ନରେ ପାଳିଲେ ସେ ବାଳି | ।୨୬। |
| ଯାଚନ୍ତ ବଂଶତି ଏକ ଦିନ । | ଜାନକୀ ବୋଲି ଦେଲେ ନାମ | ।୨୭। |
| ଜଗତ ତାତଙ୍କର ଗିରେ । | ଜନକ ଆଗେ ସେ କାଳରେ | ।୨୮। |
| ଯେଉଁ ନାରଦ ଶୁଦ୍ଧ ଗାନ୍ଧ । | ଯତ୍ନେ ସେ ବାହି ବୀଣା ଯନ୍ତ୍ର | ।୨୯। |
| ଯନ୍ତରେ ଗାଇ ଗୀତ ରସ । | ଜ୍ୟୋତିରେ ହେଲେ ପରବେଶ | ।୩୦। |
| ଯଶୋଧନେଶ ତାଙ୍କୁ ଚାହିଁ । | ଜୁହାର କଲେ ତୋଷ ବହି । | ।୩୧। |
| ଜଳେ ଚରଣ ଧୋଇ ଭଲେ । | ଜନେ ବସାଇ ପଚାରିଲେ | ।୩୨। |
| ଯୋ ପାଇଁ ଆସିଅଛ ତୁମ୍ଭେ । | ଜଣାଅ ପୁଚ୍ଛା କରୁ ଆମ୍ଭେ | ।୩୩। |
| ଯତିପତି ସେ ତାହା ଶୁଣି । | ଜନକ ଆଗେ ଏତେ ଭଣି | ।୩୪। |
| ଜାଣି ତୁମ୍ଭର ସୁତା ଜାତ । | ଜଳପିଛନ୍ତି ଏହା ତାତ | ।୩୫। |
| ଜାହ୍ନବୀଧର ପୂର୍ବକାଳେ । | ଯେଉଁ ଧନୁକୁ ଧରି ଭଲେ | ।୩୬। |
| ଜଗତ ହନ୍ତକ ତ୍ରିପୁର । | ଜିଣି ନାଶିଲେ ଧରାଭର | ।୩୭। |
| ଜନକ ଆହେ ସେ କାର୍ମୁକ । | ଯତ୍ନେ ରଖିଲେ ତୁମ୍ଭତକ | ।୩୮। |
| ଯେ ତା ହାତକୁ ଉଠାଇବ । | ଜାନକୀ ତାଙ୍କୁ ସମର୍ପିବ | ।୩୯। |
| ଜଳପି ଏତେ ତପଶାଳୀ । | ଯାଉଛି ବୋଲି ଗଲେ ଚଳି | ।୪୦। |
| ଜନକ ହୋଇ ତୋଷ ମନା । | ଜ୍ୟାଧର ନିଷ୍ଠେ କଲେ ପୂଜା | ।୪୧। |
| ଜନେ ଏ ଅନ୍ତେ ଶୁଣ କଥା । | ଯେ ଦଶରଥ ମହାରଥୀ | ।୪୨। |

(୪୧) ଜ୍ୟାଧର—ଧନୁ ।

ଜ୍ୟେଷ୍ଠ ଭରଜା ହନେ ତାଙ୍କ । ଜନମ କଲେ ସୁତା ଏକ ।୪୩।
ଜନ ପାଳକ ତାହା ଶୁଣି । ଜଟିଳ ବଶିଷ୍ଠଙ୍କୁ ଆଣି ।୪୪।
ଜାତକ ଆଦ୍ୟ ବିଧିମାନ । ଯେତେକ ତା କଲେ ସମାପନ ।୪୫।
ଯିବାରୁ ଏକବିଂଶ ଦିନ । ଜାତକ ହୋଇ ତୋଷମନ ।୪୬।
ଜାଣି ସେ ସୁତାଙ୍କ ଶାନ୍ତତା । ପ୍ରେମାଙ୍କୁ ନାମ ଦେଲେ ଶାନ୍ତା ।୪୭।
ଯାଉନ୍ତେ ଏ ରୂପେ କେତେ କାଳ । ସେ ଲୋମପାଦ ମହୀପାଳ ।୪୮।
ଜାଣନ୍ତେ ମିତ୍ର ସୁତା ଜାତ । ଯାନରେ ବସିଣ ତ୍ୱରିତ ।୪୯।
ଯାହାକୁ କରି ମିତ୍ରଙ୍କର । ଜନପଦରେ ହେଲେ ଖର ୫୦।
ଜାଣି ତା ଅଜଙ୍କର ସୂନୁ । କୂଳରେ ଉଠିଲେ ଆସନୁ ।୫୧।
ଯତନେ ସମ୍ଭାବନା କରି । ଜାଣିଲେ ଆରୋଗ୍ୟ ପଚାରି ।୫୨।
ଜଳଜକର ସେ ଉତ୍ତରେ । ଜନ ଏ ହେଲେ ଧରି କରେ ।୫୩।
ଜମ୍ବୁନଦରେ ଶୋଭିବନ । ଯାଉନ୍ତେ ବସିଲେ ସେ ପୁଣ ।୫୪।
ଯଥାବିଧିରେ ଲୋମପାଦ । ଜଳପି ଦଶରଥ ପଦ ।୫୫।
ଜନମି ଥିବା ଶାନ୍ତା କନ୍ୟା । ଯାଚଣ୍ଡା କରି ମହାମନା ।୫୬।
ଜନପଦରେ ମିଳି ଭଲେ । ଜାୟା ମୂଳରେ ତାଙ୍କୁ ଦେଲେ ।୫୭।
ଯାଉନ୍ତେ ଏ ରୂପେ କେତେ ଦିନେ । ଯାତନା ପାଇ ପୁତ୍ର ହିନେ ।୫୮।
ଜ୍ୟାଦେବମାନଙ୍କୁ ଡକାଇ । ଜନମ ପୁତ୍ର ହେବା ପାଇଁ ।୫୯।
ଜାତରୂପାଦି ନାନା ରତ୍ନ । ଯାଚି ଦିଅନ୍ତେ କରି ଯତ୍ନ ।୬୦।
ଜ୍ୟାଦେବଯୂକ ସେହି କାଳେ । ଜଞ୍ଜାଳ କରି ଲୋଭ ହେଲେ ।୬୧।
ଜଳଣ କୋପାନଳେ ନୃପ । ଯାତନା ଦେଲେକ ଅମାପ ।୬୨।
ଯୂକେ ସେ ଦ୍ୱିଜଙ୍କ ନାୟକ । ଜଳ୍ପିଲେ ଏ ରୂପରେ ବାକ୍ୟ ।୬୩।
ଜଳଦେ ଇନ୍ଦ୍ରଙ୍କ ଆଦେଶେ । ଜଳ ନ ବର୍ଷନ୍ତି ଏ ଦେଶେ ।୬୪।
ଜାଣିଣ ଲୋମପାଦ ରଜା । ଜବେ କରନ୍ତେ ତାଙ୍କୁ ପୂଜା ।୬୫।
ଜାତେ କହିଲେ ସେହି ବେଗ । ଯେବେ ଆସିବେ ଋଷ୍ୟଶୃଙ୍ଗ ।୬୬।
ଜୀବନ ବରଷିବ ତେବେ । ଯୁତକ ନାହିଁ ଏଥିଲବେ ।୬୭।
ଜଳପି ଏହା ନୃପପାଶେ । ଯାଇ ସେ ଦ୍ୱିଜ ହେଲେ ବାସେ ।୬୮।
ଜନପଦରେ ବାର ବର୍ଷ । ଜଳ ନ ବରଷନ୍ତେ ଲେଶ ।୬୯।

---

(୫୯) ଜ୍ୟାଦେବ—ବ୍ରାହ୍ମଣ । (୬୩) ଯୂକେ—ଯୂକ୍ତେ ଶବ୍ଦ ବୋଲି ମନେହୁଏ । (୬୭) ଯୁତକ—ସନ୍ଦେହ ।

ଜନେ ମରଣ ଲଭି ନିତ । ଯମ ଗ୍ରାମକୁ କଲେ ଗତ ।୭୦।
ଜାଣିଣ ଲୋମପାଦ ନୃପ । ଜବନ ହୋନ୍ତେ ଯେନ ତାପ ।୭୧।
ଜାଣିଣ ସେ କଥା ସତବ । ଜଣେ କହିଲେ ବହି ଭାବ ।୭୨।
ଜରତା ବେଶ୍ୟାକୁ ପେଶିବା । ଜଟିଳବରଙ୍କୁ ଆଣିବା ।୭୩।
ଯଥାର୍ଥ ମଣି ନରମଣି । ଜରତା ଡ଼କାଇ ସେ କ୍ଷଣି ।୭୪।
ଜାତ ରୂପରେ କର ତୋଷ । ଯାଅ ବୋଲନ୍ତେ ସେ ବାଳୀଶ ।୭୫।
ଯୋଷା ଦ୍ୱାଦଶ ଗୋଟି ଭୁଲେ । ଜାହ୍ନବୀ ଛାରେ ପ୍ରବେଶିଲେ ।୭୬।
ଜଳରେ ରଖିଣ ତରଣି । ଜଗିତ ଥିଲେ ଦାସ ଶ୍ରେଣୀ ।୭୭।
ଜରତା ଏକ ନାବେ ବସି । ଯହିଁରେ ଋଷ୍ୟଶୃଙ୍ଗ ଋଷି ।୭୮।
ଜନକ ସହିତରେ ଥିଲେ । ଜପିଣ ମନ୍ତ୍ରରାଜ ଭଲେ ।୭୯।
ଯିବାରେ ତହିଁ ପରବେଶ । ଯତଙ୍କ ଦେଖିଲେ ନିବାସ ।୮୦।
ଯୋଜନ ଅନ୍ତେ ତହୁଁ ରହି । ଯୋଗୀ ପିଅର ଯିବା ଗୃହିଁ ।୮୧।
ଯାମିନୀ ହୁଅନ୍ତେ ସେ କାଳେ । ଜଳରେ ଲୁଚିଲେ କମଳେ ।୮୨।
ଜଗତେ ଘୋଟିବାରୁ ତମ । ଜନେ ଶୋଇଲେ ଲଭି ଘୁମ ।୮୩।
ଯୁବତୀମାନେ ପଡ କୋଳେ । ଜଡ଼ି ରହିଲେ ରତି ଭୋଳେ ।୮୪।
ଜଳଜ ହୋଇ ବିରାଜିତ । ଜ୍ୟୋତ୍ସ୍ନମାନଙ୍କେ ହେଲେ ଯୁତ ।୮୫।
ଜ୍ୟେଷ୍ଠା ସହିତେ ସବିତାର । ଜ୍ୱଳିତ ହେଲେ ହୋଇ ତୋର ।୮୬।
ଯାମିନୀ ଶେଷରେ ବିଭଣ୍ଡ । ଜଳେ ପଖାଳି ନିଜ ପିଣ୍ଡ ।୮୭।
ଜ୍ୟାରୁହ ମୂଳୁଟିକେ ବସି । ଜପିଲେ ବିଷ୍ଣୁ ପଦ ରସି ।୮୮।
ଜାଣି ଜରତା ତାହା ଭଲେ । ଯାଇଣ ଯୋଷାଙ୍କର ଭୁଲେ ।୮୯।
ଯଜ୍ଞାଶ ଋଷ୍ୟଶୃଙ୍ଗ କତ । ଯିବାରୁ ତାଙ୍କୁ ଦେଖି ଯତ ।୯୦।
ଯତନେ ସମ୍ଭାବନା କରି । ଜାଣିଲେ କୁଶଳ ପଚାରି ।୯୧।
ଜଆଦ ଚରମେ ବସାଇ । ଜାବାକ୍ଷ ଫଳ ଦେଲେ ନେଇ ।୯୨।
ଯୁବତୀମାନଙ୍କ ସଙ୍ଗତେ । ଜରତା ତାହା ଭୁଞ୍ଜି ପ୍ରୀତେ ।୯୩।
ଜବା ଅଧର ଧୋଇ ଜଳେ । ଯତଙ୍କ ଗୃହିଁ କୁତୁହଳେ ।୯୪।
ଜର ମୋହିନୀ ନାଶି ସଙ୍ଗେ । ଜରତା ବେଶ୍ୟା କହେ ରଙ୍ଗେ ।୯୫।
ଜଟିଳ ଶୁଣ ଦେଇ ଚିତ୍ତ । ଯୋ ଫଳ ଭୁମ୍ଭ ବନେ ଜାତ ।୯୬।
ଯେଣୁ ତହିଁରେ ନାହିଁ ସ୍ୱାଦ । ଯୋଗୀଏ ଖାଇବାର ମଦ ।୯୭।

---

(୯୨) ଜଆଦ—ମୃଗ । (୯୫) ଜର—ଜଡ଼ ।

ଜଣାଇଁ ଏତେ ବେଶ୍ୟା ରାଜା । ଯାଚଣ ଦେଲେ ସାତ ଖଜା ।୯୮।
ଯୋଗଣ କରି ତା ଜଟିଳ । ଜିହ୍ୱା ହୋଇଲା ସୁଚଞ୍ଚଳ ।୯୯।
ଯୋଗୀମାନଙ୍କୁ ତହୁଁ ରହିଁ । ଜୁଷ୍ଟେ କହିଲେ ସେ ଗୋସାଇଁ ।୧୦୦।
ଜାଙ୍ଗଳ ଦେଖିଣ ତୁମ୍ବର । ଜୀବ କରିବ ପବିତର ।୧୦୧।
ଜନକ ନଆସୁ ଏ ଠାବ । ଯାଇ ଆସିବ ରୁଲ ଜବ ।୧୦୨।
ଜରତା ବେଶ୍ୟା ତାହା ଶୁଣି । ଯୋଗୀଙ୍କି ସଙ୍ଗତରେ ଘେନି ।୧୦୩।
ଯାଇ ସକଳ ବାଳୀ ତୁଲେ । ଜାହ୍ନବୀ ପୁଳିନେ ମେଳିଲେ ।୧୦୪।
ଜଳ ମଧ୍ୟେ ତ ତରି ସ୍ଥାପି । ଜ୍ୟାତ୍ରୁହ ପୂରୁଥିଲେ ରୂପି ।୧୦୫।
ଜାମ୍ବୁନଦର ପରଯଂକ । ଯୋଗାଡ଼ି ରଖିଥିଲେ ଏକ ।୧୦୬।
ଯତିଙ୍କି ସୁବେଶ କରାଇ । ଯତନେ ଶୁଆଇଲେ ତହିଁ ।୧୦୭।
ଜପି ସେ ତପୀ ପଦବେନି । ଜଳପେ ଭକ୍ତରାମାଙ୍କାନୀ ।୧୦୮।

ଇତିଶ୍ରୀ ଜାନକୀଶ ବିଳାସ ରାମାୟଣେ ଶିବଶିବା ସଂବାଦେ
ଆଦ୍ୟକାଣ୍ଡେ ଦ୍ୱିତୀୟୋଽଧ୍ୟାୟଃ ।

## ତୃତୀୟ ଅଧ୍ୟାୟ

### ଜହ୍ନୁଗଭୂଷଣ ଉବାଚ

ଜହ୍ନୁଗଭୂଷଣ ଏ ଅନ୍ତେ । ଜଲ୍ପନ୍ତ ପାର୍ବତୀ ପ୍ରତେ ।୧।
ଜରତା ବେଶ୍ୟା ଦିବ୍ୟ ବେଶେ । ଜଡ଼ି ବସିଲେ ଋଷି ପାଶେ ।୨।
ଜାନୁ ଯୌବନ ଦେଖାଇଲେ । ଜାପୁଟି କରି ଚୁମ୍ବ ଦେଲେ ।୩।
ଜାତିରେ ସେ ତ ରୂପାଜୀବା । ଜାଣିନେ ଲଜ୍ଜା କି ରୂପେବା ।୪।
ଯଜ୍ଞେଶ ବିଭାଣ୍ଡ ନନ୍ଦନ । ଜରତା ହୃଦେ ଦେଖି ସ୍ତନ ।୫।
ଜବେ ପୁଚ୍ଛିଲେ ଏ କି ଫଳ । ଯତନେ ହୋଇଛି ବର୍ତ୍ତୁଳ ।୬।
ଜରତା ଏହି ରୂପେ ଶୁଣି । ଜଠାଇ କହିଲେ ଏ ବାଣୀ ।୭।
ଜଣିବା ପାଇଁ ଯୁବାମତି । ଜାଠାଧରଙ୍କୁ ସ୍ଥାପି ସ୍ତୁତି ।୮।
ଜାଗ୍ରତେ କରୁଅଛୁ ପୂଜା । ଜାଣ ହେ ଋଷିକୁଳ ରାଜା ।୯।

---

(୧) ଜହ୍ନୁଗଭୂଷଣ—ଶିବ । (୩) ଜାପୁଟି—ଭିଡ଼ି ଧରି ।
(୭) ଜଠାଇ—ଛଳ ।

ଯେବେ ଆପଣ ଏହା ସ୍ପର୍ଶ । ଯେବେ କରିବ ବହ୍ନି ତୋଷ ।୧୦।
ଯେଉଁ କାମନା ତୁମ୍ଭ ମନେ । ଜଡ଼ିତ୍ତି ଫଳିବ ବହନେ ।୧୧।
ଜରତାଠାରୁଁ ଏହି ରୂପେ । ଯତି ସେ ଶୁଣିକରି ଆପେ ।୧୨।
ଜହ୍ନର କଣ୍ଠଙ୍କ ସେବାରେ । ଯୁତ ହୋଇଲେ ଅତ୍ୟନ୍ତରେ ।୧୩।
ଜରତା ହୃଦ କୁଚ ଧରି । ଜାନୁ ଯୁଗଳ ଆଶ୍ରା କରି ।୧୪।
ଜାହ୍ନବୀଧରରିରେ ମଜ୍ଜି । ଜମ୍ଭନ କଲେ ଜ୍ଞାନ ତେଜି ।୧୫।
ଜାଳିକ ଧରି ସେହି କାଳେ । ଜବନେ ବାହି ନାବ ଜଳେ ।୧୬।
ଯାମିନୀ କାମିନୀର ଶେଷେ । ଯାନ୍ତେ ମିଳିଲେ ଚମ୍ପା ଦେଶେ ।୧୭।
ଜରତା ତର୍ଷି ଆଣିମାର । ଜାଣି ଏ ଚମ୍ପା ନରବର ।୧୮।
ଯାବନ୍ତ ପୂଜାଦ୍ରବ୍ୟ ଘେନ । ଯତି କଣ୍ଠରେ ହେଲେ ଗମି ।୧୯।
ଯୁଗଳ ପାଦେ ତାହାଙ୍କର । ଜୁହାର କଲେ ଶତବାର ।୨୦।
ଯଥାବିଧିରେ ପୂଜା କରି । ଯାଇଁ ମିଳିଲେ ନିଜ ପୁରି ।୨୧।
ଜମ୍ଭାରି ସେହି କାଳେ ପୁଣି । ଜୀମୂତେ ଘୋଡ଼ାଇ ଧରଣୀ ।୨୨।
ଜଳଧାରକୁ ବରର୍ଷି ଣ । ଯାତନା ନାଶିଲେ ତକ୍ଷଣ ।୨୩।
ଯାଗ ଆରମ୍ଭି ସେହି ଦେଶ । ଯାଚି ନୃପଙ୍କୁ ଦେଲେ ଶିଷ୍ୟ ।୨୪।
ଯେ ଲୋମପାଦ ମହାରାଜା । ଜାଣି ସେ ମୁନିଙ୍କର ମହିମା ।୨୫।
ଜାଣିମା ପାରେ ଅଜସୁତ । ଜବନେ ପଠାଅନ୍ତେ ଦୂତ ।୨୬।
ଯେ ଦଶରଥ ସେହି କାଳେ । ଜାୟା ସହିତେ ତହିଁ ହେଲେ ।୨୭।
ଜନକ ଆସନ୍ତେ ତନୟୀ । ଜୁହାରି ହୋଇଲେ ବିନୋଇ ।୨୮।
ଯତିପତି ତ ଥିଲେ ତହିଁ । ଜାଜ୍ୱଲ୍ୟ ଶୋଭା ତାଙ୍କ ଗୃହିଁ ।୨୯।
ଜଟେଶ ଈଶଙ୍କର ଖେଦ । ଜନମାଇଲେ ନିଜ ହୃଦ ।୩୦।
ଜାଣି ତା ଦଶରଥ ଶତ୍ରେ । ଜାମାତା କରିବା ନିମିତ୍ତେ ।୩୧।
ଜଳଜ ହୃଦପୂରେ ଭଳି । ଜଗତେ ସେ ତ ମହାବଳୀ ।୩୨।
ଯତିଙ୍କି ବେଦିରେ ବସାଇ । ଜାୟାର୍ଥେ ସୁତା ଦେଲେ ନେଇ ।୩୩।
ଜାମ୍ବୁନଦାଦି ବାସବିତ୍ତ । ଯୌତୁକ ଦେଲେ ଅଗଣିତ ।୩୪।
ଜନକଠାକୁ ସେ ସକଳ । ଜବେ ପେଶିଲେ ତପଶୀଳ ।୩୫।

---

(୧୫) ଜାହ୍ନବୀଧରରି—କନ୍ଦର୍ପ । ଜମ୍ଭନ—ଭକ୍ଷଣ, ଏଠାରେ ରମଣ ଅର୍ଥରେ ପ୍ରଯୁକ୍ତ । (୧୬) ଜବନେ—ଶୀଘ୍ର ।
(୨୬) ପାରେ—ପାଇଁ ।

ଜାମ୍ବାତାତ ତ ସୁତ ହୀନ । ଜାତ ହେବାକୁ ତାଙ୍କ ନାନ ।୩୬।
ଯାକେ ଶ୍ୱଶୁର ଶାଶୁ ଭୁଲେ । ଯାନ୍ତେ ଅଯୋଧ୍ୟା ପୁରେ ହେଲେ ।୩୭।
ଯାଗ ତହିଁରେ କର ଜାତ । ଜ୍ୱଳନେ ଇଡ଼୍ ମନ୍ତ୍ରେ ଘୃତ ।୩୮।
ଜାତବେଦ ସେ କାଳେ ଆପେ । ଯଜ୍ଞକୁଣ୍ଡରେ ଉଭା ଧାପେ ।୩୯।
ଜାମ୍ବା ପାଶ୍ୱରେ ଚରୁଧର । ଯତିଙ୍କି କହିଲେ ଏପର ।୪୦।
ଜରାହୀନଙ୍କ ଜାତ ଚରୁ । ଯାଚିଙ୍କୁ ଧର ଋଷି ଗୁରୁ ।୪୧।
ଜଗତ ସ୍ୱାମୀ ଏ ଚରୁରେ । ଜନ୍ମିବେ ଗୃର ସ୍ୱରୂପରେ ।୪୨।
ଜଟିଳଶାର୍ଦ୍ଦୂଳ ତା ଶୁଣି । ଜ୍ୱଳନ କରୁ ଚରୁଆଣି ।୪୩।
ଜାମ୍ବାତ ତତପାଶେ ଥିଲେ । ଜଳଜକରେ ତାଙ୍କ ଦେଲେ ।୪୪।
ଜାଉତା ଧର ଅଜ ସୁତ । ଜୁଇ ହୋଇଲେ ଅନ୍ତର୍ହିତ ।୪୫।
ଜନଇନ ସେ ଚରୁ ନେଇ । ଯେଉଁ କୌଶଲ୍ୟା କଇକେଇ ।୪୬।
• ଯୁବତୀ ଦୁଇଙ୍କି ବାଣ୍ଟିଣ । ଯହୁଁ ସେ କଲେ ସମର୍ପଣ ।୪୭।
ଜଳଜନେତ୍ରୀ ସୁମିତ୍ରର । ଜାଣି ଆସିଲେ ହୋଇ ତ୍ୱରା ।୪୮।
ଯୋଷା ସେ ବେନି ଅଧେ ଅଧେ । ଯାଚି ତାହାଙ୍କୁ ଦେଲେ ସଧେ ।୪୯।
ଜେ ମନୁ (?) ସେ'ତନ ବାଳୀଶ । ଯତନେ ହେଲେ ଗର୍ଭବାସ ।୫୦।
ଜମ୍ଭଭେଦଙ୍କ ପ୍ରିୟାପ୍ରାଏ । ଯୋଖ ହୋଇଲେ ସେ ତନୟେ ।୫୧।
ଜାୟା ସହିତେ ଋଷ୍ୟଶୃଙ୍ଗ । ଯାନ୍ତେ ମିଳଲେ ପିତା ଆଗ ।୫୨।
ଜତିଂକ ଦେଖିଣ ବଭାଣ୍ଡ । ଜୁଷ୍ଟେ ଶୁଂଘିଲେ ଧର ମୁଣ୍ଡ ।୫୩।
ଜାଙ୍ଗଲେ ସେ ଶାନ୍ତା ପ୍ରମଦା । ଯତିଙ୍କି ସେବା କଲେ ସଦା ।୫୪।
ଜନାରଦନ ରାମଙ୍କର । ଜନମ ସୁଣ ଧୀର ନର ।୫୫।
ଯହୁଁ ଦଶମ ମାସ ହେଲ । ଯାତନା ପାଇଲେ କୌଶଲ୍ୟା ।୫୬।
ଜ୍ୟେଷ୍ଠା ଦିବସ ମାସ ଅନ୍ତେ । ଯେ ମାସ ତାର ପଷ ପ୍ରାନ୍ତେ ।୫୭।
ଜୀବ ବାସରେ ନବ ଦିନେ । ଜନଙ୍କ ନଧଡ଼ି ଗଣନେ ।୫୮।
ଜଳବମ୍ଭଙ୍କୁ ପୁନବସୁ । ଯାଉଅଛନ୍ତି ନିଜ ବାସୁ ।୫୯।
ଜମା ହୋଇଣ ଗ୍ରହ ପଞ୍ଚେ । ଯୁଗରେ ରହିଛନ୍ତି ଉଚ୍ଚେ ।୬୦।
ଜଳଜ ବନ୍ଧୁ ପୁଣି ମେଷେ । ଯୁକତ ହୋଇଛନ୍ତି ତୋଷେ ।୬୧।

---

(୩୮) ଇଡ଼୍—ତାଳନ୍ତେ । (୩୯) ଧାପେ—ଶୀଘ୍ର । (୪୧) ଜରାହୀନ—ଦେବତା । (୪୩) ଜ୍ୱଳନ—ଅଗ୍ନି । (୪୫) ଜୁହ୍ୱ—ଅଗ୍ନି ।

ଯେଉଁ ଏମନ୍ତ କାଲ ଶୁଦ୍ଧ । ଜାଣି କୌଶଲ୍ୟା ବାଳାସିଦ୍ଧ ।୬୨।
ଜଠରୁ ଶ୍ରୀପତିଙ୍କି ଭଲେ । ଜନମ କରି ବିଲୋକଲେ ।୬୩।
ଜମ୍ଭାରି ମାଲମଣି ସମ । ଜାଜ୍ୱଲ୍ୟ ବିରାଜଇ ଶ୍ୟାମ ।୬୪।
ଜଳଜ ଗଦା ଅରିଦର । ଯୁତ ହୋଇଛି ଚ୍ୟାରିକର ।୬୫।
ଜ୍ୱଳନ ଜ୍ୱାଲ ପରକାର । ଜାଲକା ଶୋଭା କଟିଭର ।୬୬।
ଜଣୁଛି ପଦ୍ମକୁ ଇକ୍ଷଣ । ଜୁଷ୍ଟରେ ବିଲୋକନ୍ତି ପୁଣ ।୬୭।
ଯାମିନୀ ଶେଷ ପୂର୍ବଭାଗ । ଜଣୁଛି ଅଧରର ରଙ୍ଗ ।୬୮।
ଜାମ୍ବୁନଦାଦି ମୋତିମାଳା । ଯତନେ ଲମ୍ବିଅଛି ଗଳା ।୬୯।
ଯୁଗଳ ଚରଣେ ନୂପୁର । ଜଣେ ସେ ନାଦେ ହଂସ ସ୍ୱର ।୭୦।
ଜହ୍ନୁଗ ସମ ବାହୁ ବେନି । ଜାନୁଉଲଟ ରମ୍ଭାଜିଣି ।୭୧।
ଜନାରଦନଙ୍କୁ ଏ ରୂପେ । ଜନନୀ ଦେଖିକରି ଆପେ ।୭୨।
ଯୋଡ଼ି ମସ୍ତକେ ବେନିପାଣି । ଜଣା କଲେ ଏ ରୂପେ ବାଣୀ ।୭୩।
ଜାତିରେ ଅଟେ ମୁଁ ଯୁବତୀ । ଜାଣିମି କେଉଁ ରୂପେ ସ୍ତୁତି ।୭୪।
ଯେବେ ସୁଦୟା ମୋରଠାର । ଯେବେ ସଂହର ଏ ଶରୀର ।୭୫।
ଜନ ବାଳକ ପରି ହୋଇ । ଜଞ୍ଜାଳ କର ଲକ୍ଷ୍ମୀସାଇଁ ।୭୬।
ଜଗଦୀଶ୍ୱର ତାହା ଶୁଣି । ଜୁଷ୍ଟରେ କହିଲେ ସେ କ୍ଷଣି ।୭୭।
ଜରସ୍ଥାନଙ୍କ ହିତାର୍ଥରେ । ଜନ୍ମିଲି ତୁମ୍ଭର ଉଦରେ ।୭୮।
ଜାଙ୍ଗଲେ କରିଣ ସଞ୍ଚାର । ଯୁଦ୍ଧେ ନାଶିବି ଦଶଶିର ।୭୯।
ଜଳଧି ତନୟାଙ୍କ ନାହା । ଜନନୀ ଆଗେ କହି ଏହା ।୮୦।
ଜଗତ ରଖିବାକୁ ମାୟା । ଯତ୍ନେ ଧଇଲେ ଶିଶୁକାୟା ।୮୧।
ଯୁଗଳ ପଦରୁଳ ପୁଣ । ଜନମୋହନେ କଲେ ସ୍ୱନ ।୮୨।
ଯୁଧାଜିତଙ୍କ ଯେଉଁ ଭଗ୍ନୀ । ଯାଚନା ସେହି ପାଇ ପୁଣି ।୮୩।
ଜୀମୂତ ଶ୍ୟାମଙ୍କ ସଦୃଶ । ଜନମ କଲେ ଏକ ଶିଷ୍ୟ ।୮୪।
ଜାତ ରୂପର ପରି ଦେହ । ଜିତଇ କମଳକୁ ମୁହଁ ।୮୫।
ଯେଉଁ ସୁମିତ୍ରା ଏହି ମତ । ଜନ୍ମ କଲେ ସେ ବେନି ସୁତ ।୮୬।
ଜନମୋତ୍ସବ ହୁତଙ୍କର । ଜାଣନ୍ତେ ଅଜଙ୍କ କୁମର ।୮୭।
ଯତି ଭୂପତି ବଶିଷ୍ଠଙ୍କୁ । ଯୁକ୍ତିରେ ଡକାଇ ପାଶକୁ ।୮୮।

---

(୬୪) ଜମ୍ଭାରି—ଇନ୍ଦ୍ର । (୭୯) ଜାଙ୍ଗଲେ—ବଣରେ ।
(୮୮) ଯୁକ୍ତିରେ—ଯୁକ୍ତି ସହକାରେ, ସମ୍ମାନର ସହିତ ।

ଜାଇ ଜାତକ ଆଦିବିଧି । ଯେତେ ତା କରାଇଲେ ସିଦ୍ଧି ।୮୯।
ଜଗଣ୍ଡଦେବଙ୍କୁ ଡ଼କାଇ । ଯାଚଣ ଦେଲେ ରତ୍ନ ଗାଈ ।୯୦।
ଯିବାରୁ ଦିନ ଏକବିଂଶ । ଜଳଜ ଆସନଙ୍କ ଶିଷ୍ୟ ।୯୧।
ଜ୍ୟେଷ୍ଠ ଶିଷ୍ୟଙ୍କ ଦେଲେ ନାମ । ଯତ୍ତଙ୍କ ଅଚିନ୍ତ୍ୟ ଏ ରମ୍ୟ ।୯୨।
ଜଗତେ ଥିବା ମାନବାଳ । ଜାଣନ୍ତୁ ଏଣୁ ରାମ ବୋଲି ।୯୩।
ଯୁଧାଜିତଙ୍କ ଭଣଜାକୁ । ଯତନେ କରି ଭୂଷଣକୁ ।୯୪।
ଜନଙ୍କୁ କରିବେ ଭୂଷଣ । ଜାଣିଣ ଦେଲେ ଭରତ ନାମ ।୯୫।
ଯାମଳେ ସ୍ୱର୍ଣ୍ଣବର୍ଣ୍ଣ ବନ୍ଧୁ । ଜନ୍ମି ଥିଲେ ତ ଭାଇ ଦୁଇ ।୯୬।
ଯୁକତ ହେବାରୁ ଲକ୍ଷଣ । ଜ୍ୟେଷ୍ଠଙ୍କୁ ବୋଇଲେ ଲକ୍ଷ୍ମଣ ।୯୭।
ଜିଣିମେ ବୋଲି ଶତ୍ରୁ ଜନ । ଜଘନ୍ୟଜଙ୍କୁ ଶତ୍ରୁଘନ ।୯୮।
ଜଇବାତୃକ ଅନ୍ତରୀକ୍ଷେ । ଯେହ୍ନେ ବଢ଼ନ୍ତି ଶୁକ୍ଳପକ୍ଷେ ।୯୯।
ଯଦ୍ୟପୂ ସବ୍ୱିତେ ଶ୍ରୀରାମ । ଜାଣ ବଢ଼ିଲେ ସେ ସମାନ ।୧୦୦।
ଯହୁଁ ଅଠର ମାସ ହେଲ । ଜଙ୍ଘେ ଚଳିଲେ ଚଳିପିଲ ।୧୦୧।
ଯୁଗ୍ମ ବରଷ ଶେଷ ହୋନ୍ତେ । ଜନବାସବ ତୋଷ ଶାନ୍ତେ ।୧୦୨।
ଯଜ୍ଞପଣ୍ଡିତଙ୍କ କରେ ଭଲେ । ଯୋଗେ ଶ୍ରବଣ ବିନ୍ଧାଇଲେ ।୧୦୩।
ଜାମ୍ବୁନଦର ଲୁଳି କରି । ଯୁଗଳ କର୍ଣ୍ଣେ ଦେଲେ ଭରି ।୧୦୪।
ଜିର ଅପୂର୍ବେ ରଘୁବଳା । ଜମି ଭାଇଙ୍କ କରି ଖେଳା ।୧୦୫।
ଜନକ ଜନନୀଙ୍କ ମତି । ନଡ଼ାଇ ଦେଲେ ସୁଖେ ଅତି ।୧୦୬।
ଯାଉ ଭକତ ରାମ ଯତି । ଜପି ସେ ରାମ ପଦ ନିତି ।୧୦୭।
ଯମରେ ହୋଇବାକୁ ସୂତ । ଜଳପେ ରାମ କଥାମୃତ ।୧୦୮।

ଇତିଶ୍ରୀ ଜାନକୀଶ ବିଳାସ ରାମାୟଣେ ଶିବଶିବା ସମ୍ବାଦେ
ଆଦିକାଣ୍ଡେ ନାମ ତୃତୀୟୋଽଧ୍ୟାୟଃ



(୯୮) ଜଘନ୍ୟଜ—କନିଷ୍ଠ । (୯୯) ଜଇବାତୃକ, ଜୈବାତୃକ—ଚନ୍ଦ୍ର ।
(୧୦୪) ଲୁଳି—କର୍ଣ୍ଣାଳଂକାର ବିଶେଷ । (୧୦୫) ଜିର ଅପୂର୍ବେ—ଅଜିରରେ, ଅଗଣାରେ ।

# ଚତୁର୍ଥ ଅଧ୍ୟାୟ

## ଜୟନ୍ତ ଉବାଚ

ଜୟନ୍ତ ହୋଇ ତୋଷମନ୍ତ । ଜୟନ୍ତୀ କଣ୍ଠରେ କହନ୍ତ ।୧।
ଯାନ୍ତେ ପଞ୍ଚମ ସମ୍ବତ୍ସର । ଯେ ଦଶରଥ ନରବର ।୨।
ଯୁଦ୍ଧବିଦ୍ୟାଦି ପାଠମାନ । ଜାଣି ହେବାକୁ ଧ୍ୱାଦବାନ ।୩।
ଯେଉଁ ବଶିଷ୍ଠ ମୁନିପାଇଁ । ଜଘନେ ତାଙ୍କ ଦେଲେ ନେଇ ।୪।
ଜଠରଲମ୍ବ ପୂଜା କରି । ଜ୍ୟେଷ୍ଠ ପଢ଼ିଲେ ଭାଇ ଚାରି ।୫।
ଜମ୍ବାଳଜାକ୍ଷ ରାମଚନ୍ଦ୍ର । ଯାବନ୍ତ ଶାସ୍ତ୍ରେ ହେଲେ ବିଦ୍ୟ ।୬।
ଯା ଦାସୀ ଅଟନ୍ତି ଶାରଦା । ଜାତକ ତାଙ୍କୁ ବେଦବିଦ୍ୟା ।୭।
ଜାତକ ଧନ୍ୟ ହୋଇ ହର୍ଷ । ଜାଣି ପୁତ୍ରଙ୍କ ସାତ ବର୍ଷ ।୮।
ଜ୍ୟାଦେବଙ୍କରେ ହୋଇ ଯୁକ୍ତ । ଯୋଗ ବୁଝାଇ କଲେ ବ୍ରତ ।୯।
ଜାମ୍ବୁଚ ଶ୍ୟାମରାମ ପ୍ରୀତେ । ଯୁକ୍ତ ହୋଇଣ ତିନି ଭ୍ରାତେ ।୧୦।
ଜନୟେ ରକ୍ଷଣ ବଢ଼ିଲେ । ଯୁବା କନ୍ଦର୍ପ ସମ ତୁଲ୍ୟେ ।୧୧।
ଯୁଗ୍ମ ଚତୁର ବର୍ଷ ଶେଷେ । ଯା ହେଲା ଶୁଣ ଜନେ ତୋଷେ ।୧୨।
ଜାହ୍ନବୀ ତଟରେ କଉଶିକ । ଜମାଇ ସମ୍ଭାର ଅନେକ ।୧୩।
ଜରାହୀନାଦି ସୁପିତୃଙ୍କୁ । ଯାଗରେ ଶ୍ରାଗ (?) କରିବାକୁ ।୧୪।
ଜ୍ୱଳନ କୁଣ୍ଡ ମଧ୍ୟେ ସ୍ଥାପି । ଜୁହୁରେ ଇଢ଼ନ୍ତେ ସର୍ପି ।୧୫।
ଜମିଣ ଅନେକ ଅସୁର । ଯଜ୍ଞ କରନ୍ତେ ନାରଖାର ।୧୬।
ଯୋଗରେ ରାମ ବିଷ୍ଣୁ ଜାତ । ଜାଣି ଦୁର୍ଜ୍ଞେୟ ଲୋକ ତାତ ।୧୭।
ଜନ୍ମାଇ ମୋଦ ହୃଦୟରେ । ଯାଇ ମିଳିଲେ ଅଯୋଧ୍ୟାରେ ।୧୮।
ଯତି ଆଗମ ଶୁଣି ରାଜା । ଯୁକତ କଲେ ହର୍ଷେ ମଜ୍ଜା ।୧୯।
ଜାବାଲି ବଶିଷ୍ଠ ଏ ବେନି । ଯତିଙ୍କି ସଙ୍ଗତରେ ଘେନି ।୨୦।
ଯାହା କରିଣ ପଦଯୁଗେ । ଜଟିଳ ପାଖେ ହେଲେ ବେଗେ ।୨୧।

---

(୫) ଜଠର ଲମ୍ବ—ଗଣପତି । (୮) ଜାତକ—ପିତା । (୯) ଜ୍ୟାଦେବ—ବ୍ରାହ୍ମଣ । (୧୩) ଜମାଇ—ରୁଣ୍ଡକରି । (୧୫) ଜୁହୁ—ଅଗ୍ନି, ସର୍ପି—ଘୃତ । (୧୭) ଦୁର୍ଜ୍ଞେୟ ଲୋକତାତ—ଦୁର୍ଜ୍ଞେୟ ବ୍ରହ୍ମା ।

ଜହ୍ନାର ସାଷ୍ଟାଙ୍ଗରେ କରି । ଜଳରେ ଧୋଇଲେ ଅଙ୍ଘ୍ରି ।୨୨।
ଜଳ୍ପିଲେ ସଦନରେ ଆମ୍ଭ । ଯାହା ପଢ଼ିଲେ ପଦ ତୁମ୍ଭ ।୨୩।
ଜଗତ ସପ୍ତେ ଏଥୁ ବଳି । ଯଶ ଅର୍ଜିବ କସ ବୋଲି ।୨୪।
ଜଘନେ ତାହାଙ୍କୁ ଚଳାଇ । ଜନାଶ୍ରୟରେ ହେଲେ ଯାଇ ।୨୫।
ଜଆଦ ଚର୍ମେ ବସାଇଲେ । ହୋଂଡ଼ି ହସ୍ତକୁ ସ୍ଥିତ ହେଲେ ।୨୬।
ଜନପାଳନ ରାଜନୀତ । ଯତି ପୃଚ୍ଛନ୍ତେ ବହୁ ପ୍ରୀତ ।୨୭।
ଜାତକଙ୍କର କଷ୍ଟାକଷ୍ଟ । ଯାବନ୍ତ କହିଲେ ବଶିଷ୍ଠ ।୨୮।
ଜ୍ୟାପାଳ ସେ ଅନନ୍ତ ଆନନ୍ଦେ । ଜଣା କଲେ ଏ ଗିର ମନ୍ଦେ ।୨୯।
ଯୋଗଧ୍ୟାନକୁ ତେଜ ଦେଇ । ଯୋଗି ହେ ଅଇଲ କମ୍ପାଇ ।୩୦।
ଯେବେ ମୁଁ ଅଟେ ତୁମ୍ଭ ଭୃତ୍ୟ । ଯଥାର୍ଥ କହ ତପୋବନ୍ତ ।୩୧।
ଜଟିଲ ଷାଢ଼୍ଳ ତା ଶୁଣି । ଜଳ୍ପନ୍ତି ଶୁଣ ନରମଣି ।୩୨।
ଜମା କରଣ ତପୋଧନ । ଯାଗ କରନ୍ତେ ସିଦ୍ଧବନ ।୩୩।
ଜଗତ ହନ୍ତା ସୁନ୍ଦବାଳୀ । ଜାତୁଧାନଙ୍କ ସଙ୍ଗେ ମିଳି ।୩୪।
ଜବେ ବରଷି ରକ୍ତମାଂସ । ଯଜ୍ଞକୁ କରୁଅଛି ନାଶ ।୩୫।
ଜ୍ୟେଷ୍ଠ ସୁତଙ୍କୁ ଦିଅ ତବ । ଯାଇ ସେ ରଖିବେ ସେ ଯାଗ ।୩୬।
ଜନାର୍ଦ୍ଦନ ତ ସେ ସାକ୍ଷାତେ । ଜନ୍ମିଲେ ଦେବଙ୍କର ହିତେ ।୩୭।
ଯୁବନ୍ଧି ସହ୍ମାର ଦୁଷ୍ଟ ସୁର । ଜାଣ ହରିବେ ମହୀଭାର ।୩୮।
ଯାହାଙ୍କ ନାମ ଅଟେ ରାମ । ଜାତୁଧାନଙ୍କ ସେଟି ଯମ ।୩୯।
ଜବଗେ ଛେଦ ଦୈତ୍ୟ ଶିର । ଯଜ୍ଞ ସେ ରଖିବେ ମୋହର ।୪୦।
ଜବନେ ଶ୍ରୀରାମଙ୍କୁ ଦିଅ । ଜବନ ହେଲେ ଶୁଣି ରାୟ ।୪୧।
ଜାଣିବା ବିଶ୍ୱାମିତ୍ର ମତ । ଜଳ୍ପିଲେ ଶୁଣ ନରପତି ।୪୨।
ଯେବେ ନଦେବ ମତେ ରାମ । ଜାଳିବ କୋପାନଳେ ଗ୍ରାମ ।୪୩।
ଯତିଙ୍କ ଅମର୍ଷକୁ ଡ଼ରି । ସେ ଦଶରଥ ଦଣ୍ଡଧାରୀ ।୪୪।
ଜ୍ୟେଷ୍ଠ ସୁତଙ୍କୁ ଆଣି ବେଗେ । ଯାଅ ବୋଇଲେ ମୁନି ସଙ୍ଗେ ।୪୫।
ଜନକ ବାକ୍ୟ ଶୁଣି ରାମ । ସିବ ବୋଇଲେ ବହୁ ପ୍ରେମ ।୪୬।
ଜନନୀ ଆଗେ ମିଳି ପୁଣି । ଜଣାଇଁ ହୋଇଲେ ମେଲାଣି ।୪୭।
ଯତନେ ତହୁଁ ଅଲଂକାର । ଯୁକତ କଲେ କଳେବର ।୪୮।

---

(୩୪) ଜାତୁଧାନ—ରାକ୍ଷସ । (୪୦) ଜବଗେ—ଶୀଘ୍ର ଯାଇ ।
(୪୪) ଅମର୍ଷ—କ୍ରୋଧ ।

ଜର କାର୍ମୁକ ଧରି କରେ । ଜନସ୍ତୁ ବାହାରି ସଭାରେ ।୪୯।
ଜ୍ୟେଷ୍ଠ ନନ୍ଦନ ସୁମିତ୍ରାଙ୍କ । ଯୁଗଳ ଡୋଳରୁ ଲୋତକ ।୫୦।
ଜଳକୁ ବୁହାଇ ସେ କାଳେ । ଜଣାନ୍ତି ରାମଙ୍କୁ ଶ୍ବକଲେ ।୫୧।
ଯେବେ ଏଠାରେ ଛାଡ଼ି ମୋତେ । ଯିବ ସେ ଯତିଙ୍କ ସଙ୍ଗତେ ।୫୨।
ଜାବେ ମୁଁ ନ ରଖିବ ଆଶଃ । ଜାଣ ହେ ରାମ ମହାଯଶା ।୫୩।
ଜୀମୂତ ଶ୍ୟାମ ତାହା ଶୁଣି । ଜଘନ୍ୟଜଙ୍କ ଧରି ପାଣି ।୫୪।
ଜୂଷରେ କହିଲେ ଏ ଭାଷ । ଯିବା ସୁବେଶ ହୋଇ ଆସ ।୫୫।
ଯାଇ ଲକ୍ଷ୍ମଣ ବୀର ହରି । ଜୁହାର .ଜନନୀଙ୍କି କରି ।୫୬।
ଜ୍ୟେଷ୍ଠ ଭାଇଙ୍କ ସଙ୍ଗେ ମୁହିଁ । ଯାଉଛି ବୋଲି କରି କହି ।୫୭।
ଜ୍ୟାଧର ଶରଧରି ସ୍କନ୍ଧେ । ଯାହାକୁ କଲେ ରାମ ପଛେ ।୫୮।
ଯୋଗୀଙ୍କି ରଘବ ଅନାଇଁ । ଜଳ୍ପିଲେ ଶୁଳ ହେ ଗୋସାଇଁ ।୫୯।
ଜଗତ ତାତ ବେନି ଯତି । ଜାଣି ରାମଙ୍କ ଶୁଦ୍ଧମତି ।୬୦।
ଜାଉଁଳ ଧରି ବାମ ସ୍କନ୍ଧେ । ଯିବାକୁ ବାହାରିଲେ ମନ୍ଦେ ।୬୧।
ଯୂଥରେ ରାମ ସଉମିତ୍ରି । ଯତିଙ୍କ ପଛେ କଲେ ଗତି ।୬୨।
ଜଳଜାସନଙ୍କର ପୃଷ୍ଟେ । ଜନାରଦନ ହରି ହୃଷ୍ଟେ ।୬୩।
ଯିବାର ପରି ସେ କାଳରେ । ଜନେ ମଣିଲେ ମାନସରେ ।୬୪।
ଯାନ୍ତେ ମାର୍ଗକୁ କଟୁ ରଶ୍ମି । ଜ୍ୟାରୁହ ମୂଳୁ ଠିକେ ବସି ।୬୫।
ଜଳଦଜତ ବରନଙ୍କୁ । ଯତନେ କରି ଆଶ୍ଳେଷକୁ ।୬୬।
ଯୋ ବଦ୍ୟା ବଳା ଅତିବଳା । ଯାଚଣ ଦେଲେ ଛାଡ଼ି ହେଲା ।୬୭।
ଯାମିନୀ ହୁଅନ୍ତେ ସେ କାଳ । ଯଥୋକ୍ତେ ସନ୍ଧ୍ୟା ସାରି ଜଳ ।୬୮।
ଜଆଦ ଛାଲ ପାଡ଼ି ତଳେ । ଜଟିଳ ବର ନିଦ୍ରା କଲେ ।୬୯।
ଜୁଷ୍ଟ ମନରେ ଭକ୍ତି ଦୁଇ । ଜବଗ ଶୂପ କରେ ବହି ।୭୦।
ଯୁଗଳ ପାଶେ ସେ ଯତିଙ୍କ । ଜଗିଲେ ହୋଇ ଜାଗରୂକ ।୭୧।
ଜଷ୍ଟୁ ଦଗରେ ସେଥୁ ଅନ୍ତେ । ଯନ୍ତ୍ରା ରବିଙ୍କ ପ୍ରକାଶନ୍ତେ ।୭୨।
ଜାଣି ଋଷିନ୍ଦ୍ରୁ ଉଠି ରଷି । ଜଳରେ ସ୍ନାନ କଲେ ମଣି ।୭୩।
ଯେତେକ କୃତ୍ୟାଗୁର ମାନ । ଯୁକତେ କଲେ ସମାପନ ।୭୪।
ଯାହାକୁ କରଣ ସେ ଅନ୍ତେ । ଯୋଜନେ ପଥ ବହିପାନ୍ତେ ।୭୫।

---

(୫୮) ଜ୍ୟାଧର—ଧନୁ । (୭୦) ଜବଗ – ଶର ।
(୭୨) ଜଷ୍ଟୁ ଦଗ—ପୂର୍ବ ଦଗ ।

ଯା ନାମ ସରଯୂ ବିଖ୍ୟାତ । ଜନଙ୍କୁ କରନ୍ତି ମୁକତ ।୭୬।
ଜଗଦେଶ୍ୱର ରାମ ତାଙ୍କୁ । ଜ୍ୟୋତିରେ କରି ଲୋକନକୁ ।୭୭।
ଯାଜକେ ପୁଚ୍ଛିଲେ ଏ ଋଷି । ଜମ୍ବାଳମାଙ୍କ ନାମ କିସ ।୭୮।
ଜାଣିଥିଲେ ମୋ ପୁରତରେ । ଯତ୍ନ ହେବ କହ ସତ୍ୱରେ ।୭୯।
ଯୋଗୀରାଜନ ତାହା ଶୁଣି । ଯତନେ କହିଲେ ଏ ବାଣୀ ।୮୦।
ଯୁଗ ଆଦ୍ୟର ଏ ବାରତା । ଜମ୍ବୁପର୍ବତ ଶିଖେ ଧାତା ।୮୧।
ଜାତ ଶତ୍ରୁରୁ କଲେ ସର । ଯା ନାମ ମାନସସରୋବର ।୮୨।
ଜଳ ଉଥୁଳି ତହୁଁ ନିତ । ଜଆରେ ବହି ଏ ଆସନ୍ତି ।୮୩।
ଜଗତେ ସରଯୂ ବୋଲଣ । ଜଣା ଏ ହୋଇଛନ୍ତି ପୁଣ ।୮୪।
ଯତି ଭରଣ ରାମ ଶୁଣି । ଜଳ ସିଞ୍ଚିଲେ ଶିରେ ଆଣି ।୮୫।
ଜାତ ତ ହୋଇଥିଲା ଶୋଷ । ପିବାକୁ କଲେ ମଧ ଗ୍ରାସ ।୮୬।
ଜାଲଆମାନେ ନାବ ବାନ୍ଧି । ଜଗି ତ ଥିଲେ କୂଳ ରୁନ୍ଧି ।୮୭।
ଜଣକ ନାବେ ବସିକରି । ଜାଣ ତକ୍ଷଣେ ହେଲେ ପାରି ।୮୮।
ଯଥାର୍ଥ ମୂଲ୍ୟ ଦେଇ ତାଙ୍କୁ । ଜାଙ୍ଗଲେ କଲେ ଗମନକୁ ।୮୯।
ଜଳଜବନ୍ଧୁ ମଧ କାଳେ । ଯାଇ ବିପୁଳ ବନେ ହେଲେ ।୯୦।
ଜାଣିମାପାରେ ବନ ନାମ । ମୁନିଙ୍କି ପୁଚ୍ଛିଲେ ଶ୍ରୀରାମ ।୯୧।
ଯୋଗୀ କହିଲେ ଆହେ ବାଳ । ଜାଙ୍ଗଲ ନାମଟି ବିପୁଳ ।୯୨।
ଜମ୍ଭାରି ବିଶ୍ୱାସେ ନମୁଚି । ଯାତୁଧାନଙ୍କୁ ଦୋଷ ପାଞ୍ଚି ।୯୩।
ଯୁଦ୍ଧରେ କରିବାରୁ ନାଶ । ଜାନୂଲ୍ୟ ଦେହୁ ହେଲା ଧ୍ୱଂସ ।୯୪।
ଯୁକତ ତହୁଁ ଭଏ ହୋଇ । ଯଶ ସମ୍ପତ୍ତି ତେଜ ଦେଇ ।୯୫।
ଯାମିନୀ ଭିନ ଏଥି ରହୁ । ଜାଣ ତରିଲେ ପାପୁ ସେହୁ ।୯୬।
ଯୁଗୁ ପଞ୍ଚମ ଶତନେଇ । ଯହୁଁ ହୋଇଲେ ପୁଣ୍ୟ ଗାଇ ।୯୭।
ଜଗତେ ବିପୁଳ ବୋଲଣି । ଜାଙ୍ଗଲ ନାମ ଖ୍ୟାତ ପୁଣି ।୯୮।
ଯତିଭୂପତି ଏତେ ପ୍ରୀତେ । ଜୂନ୍ତରେ କହି ରାମାଗ୍ରତେ ।୯୯।
ଯମୁନାତାତଙ୍କର ତେଜେ । ଯାତନା ପାଇ ହେଲେ ବଜେ ।୧୦୦।
ଜେମନ କରି ଫଳମୂଳ । ଜାଣି ସୁରଙ୍କ ଜରକାଳ ।୧୦୧।
ଯାଇ ସେଠାରୁ ତିନ ଜଣ । କଣିଲେ ବାଟ ତିନ ଯୁଣ ।୧୦୨।

(୭୮) ଯାଜକ—ଋଷି, ଜମ୍ବାଳମା—ନଦୀ । (୯୫) ଭଏ—ଭସ୍ମ ।
(୧୦୧) ଜରକାଳ—ଅସ୍ତ୍ର ସମସ୍ତ ।

ଯାମିନୀ ହୁଅନ୍ତେ ଶେଷ କାଳ । ଜାଗ୍ରତେ କୌଶିକ ତପଶୀଳ ।୧୦୩।
ଜମ୍ବୁ ପାଦପ ମୂଳେ ବସି । ଜପିଲେ ମନ୍ତ୍ରରାଜ ଋଷି ।୧୦୪।
ଜ୍ୟୋତି ନଦ୍ରାରେ ଢୋଳନ୍ତେ ବୃଜ । ଜ୍ୟାଟରେ ଶୋଇଲେ ସୁଖେ ମଜ୍ଜି ।୧୦୫।
ଜ୍ୟୋସ୍ନି ଶେଷରେ ଉଠି ଋଷି । ଜଳରେ ନତ୍ୟକର୍ମ ଶେଷି ।୧୦୬।
ଯାବା କରଣ ତାଡ଼କାର । ଜାଙ୍ଗଲେ ମିଳଲେ ସତ୍ୱର ।୧୦୭।
ଜପି ସେ ଯତି ରାମ ପାଦ । ଜଳଟେ ଭକ୍ତରାମ ମନ୍ଦ ।୧୦୮।

ଇତଶ୍ରୀ ଜାନକାଶ ବଳାସ ରାମାୟଣେ ଶିବଶିବା ସମ୍ବାଦେ ଆଦକାଣ୍ଡେ
ନାମ ଚତୁର୍ଥ ଅଧ୍ୟାୟଃ

## ପଞ୍ଚମ ଅଧ୍ୟାୟ

### ଜଟାଧାରୀ ଉବାଚ

ଜାନୁରେ ଗଣ୍ଡଶଂକ ଧରି । ଜୁଟେଷ୍ଟ କହନ୍ତି ଜଟାଧାରୀ ।୧।
ଯୋଗୀ ରାମଙ୍କ ମୁଖ ଚାହିଁ । ଜଳ୍ପିଲେ ଶୁଣ ନୀଳ ଦେହି ।୨।
ଜନନୀ ମାରିଚର ଏଥି । ଜାଳଟେ ଅଛି କୋପେ ଛାତି ।୩।
ଯାଗ ମୋହର ତା ବଟନ । ଯାଇ ନାଶନ୍ତି ଯାତୁଧାନେ ।୪।
ଜୀମୂତ ଶ୍ୟାମ ତାହା ଶୁଣି । ଜ୍ୟା ଚାପେ ଦେଇ ଧରି ପୁଣି ।୫।
ଯତିଙ୍କି କହିଲେ ଏପରି । ଯେବେ ଆସିବ ନିଶାଚରୀ ।୬।
ଜୀବ ହାରିବ ମୋ ସାୟକେ । ଯୁତକ ନାହିଁ ଏଥି ଠିକେ ।୭।
ଜାତି ନକର ଏବେ ଭ୍ରାନ୍ତି । ଜୃତରେ କର ତୁମ୍ଭେ ଗତି ।୮।
ଜ୍ୟେଷ୍ଠଦେବଙ୍କ ହାତେ ମୁହିଁ । ଜନ୍ମ ତ ହୋଇଅଛି ମହୀ ।୯।
ଜାତୁରେ ନାହିଁ ମୋର ଭୟ । ଯାତୁକା କରିଦେବ କ୍ଷୟ ।୧୦।
ଜଳଜେକ୍ଷଣ ରାମ ଏତେ । ଜଳପି ତପିଙ୍କ ପୁରତେ ।୧୧।
ଜିଆକୁ ଆକର୍ଷନ୍ତେ ଟାଣେ । ଜବେ ଟୂରିଲା ଶବ୍ଦ ବଣେ ।୧୨।
ଯେଉଁ ତାଡ଼କା ଯାତୁଧାନୀ । ଜାଣି ଅଇଲା କରି ଧ୍ୱନି ।୧୩।
ଜ୍ୟେଷ୍ଠଦେବୀକ ଦେଖୁ ଯତି । ଜନ୍ମାଇ ଚିତ୍ତେ ଅତି ଭ୍ରାନ୍ତି ।୧୪।
ଜଳ୍ପିଲେ ରାମ ଆଗୁ ମାରି । ଜୀବନ ନେମଟି ମୋହରି ।୧୫।
ଯୋଗିଙ୍କ ବଚନ ଶ୍ରବଣ । ଜୀମୂତ ଶ୍ୟାମ ନ ସହଣ ।୧୬।

---

(୧୦) ଜାତୁ—କଦାଚିତ୍, ଯାତୁକା—ରାକ୍ଷସୀ । (୧୪) ଜ୍ୟେଷ୍ଠଦେବୀ—ରାକ୍ଷସୀ ।

ଜଗତ ଦହଇ ଯୋ ଶ୍ରେପ । ଯୋଚ ବନ୍ଧିଲେ ଘେନ କୋପ ।୧୭।
ଯାଇ ସେ ଶର ତାଡ଼କାର । ଜଠରେ ପଡ଼ିଲା ସତ୍ୱର ।୧୮।
ଜଘନ୍ୟ ବଦାଶ ତା ପ୍ରାଣ । ଯମଙ୍କୁ କଲା ସମର୍ପଣ ।୧୯।
ଯାତୁଧାନୀର ଦେହୁ ପୁଣି । ଜ୍ୟୋତିଏ ବାହାରି ସେ କ୍ଷଣି ।୨୦।
ଜମ୍ବାଳଜାକ୍ଷ ରାମ ଅଙ୍ଗେ । ଯୁକ୍ତ ହେଲା ଆସି ବେଗେ ।୨୧।
ଜବଗ ଗଙ୍ଗାଜଳେ ପଶି । ଜମିଲା ରାମ ଭୁଣେ ଆସି ।୨୨।
ଜମ୍ଭାରି ଆଦି ସୁରଗଣ । ଜାଣନ୍ତେ ତାଡ଼କା ମରଣ ।୨୩।
ଜାତ୍ୟାଦି ପୁଷ୍ପ ବର୍ଷି ଭଲେ । ଜୟବାଣୀକ ଉଚ୍ଚାରିଲେ ।୨୪।
ଜାତେ କୌଶିକ ଋଷି ସାଇଁ । ଯତ୍ନେ ରାମଙ୍କୁ କୁଣ୍ଢାଇ ।୨୫।
ଯେତେକ ବିଦ୍ୟା ଜାଣିଥିଲେ । ଯାବନ୍ତ ବତାଇ କହିଲେ ।୨୬।
ଜାହ୍ନବୀ ତହୁଁ ପାରି ହୋଇ । ଜାଙ୍ଗଳ ସିଦ୍ଧି ହେଲେ ଯାଇ ।୨୭।
ଯାଗ ସମ୍ଭାର ଭିଆଇଣ । ଜମାଇ ମୁନି ମୁନିଗଣ ।୨୮।
ଜୁହୁରେ ଭରି ଗୁଆ ଘୃତ । ଜ୍ୱଳନେ ଇଡ଼ିଲେ ତ୍ୱରିତ ।୨୯।
ଜମ୍ଭୁ ବୃନ୍ଦେ ସେ ବାସ ପାଇ । ଯେ ଯାହା ସ୍ଥାନୁ ଗଲେ ଧାଇଁ ।୩୦।
ଯତିଙ୍କି ଖାଇବା ବୋଲିଣ । ଜମିଲେ ତମୀ ହୋଇ ପୁଣ ।୩୧।
ଜନମା ସ୍ଥଳରେ ମାରୀଚ । ଯୁଣ ପର୍ଯ୍ୟନ୍ତେ ହୋଇ ଉଚ ।୩୨।
ଯାତୁଧାନଙ୍କ ସଙ୍ଗେ ହେଲେ । ଯାଇ ମିଳିଲେ ହୋମ ସ୍ଥଳେ ।୩୩।
ଜରଧି ତରଙ୍ଗ ଶବଦ । ଯୋଖେ ଉଚ୍ଚରେ କଲେ ନାଦ ।୩୪।
ଜ୍ୟେଷ୍ଠଦେବଙ୍କୁ ଦେଖି ଯତି । ଜଳ୍ପିଲେ ଆହେ ରଘୁପତି ।୩୫।
ଯାଗ କରିବେ ନାରଖାର । ଜବଗେ ଏମାନଙ୍କୁ ମାର ।୩୬।
ଯତି ଭାରତୀ ଶୁଣି ରାମ । ଜହ୍ନର ପ୍ରାଏ ହେଲେ ତମ ।୩୭।
ଯୋଚଣ ବାଣ ସିଞ୍ଜିନୀରେ । ଜଳ୍ପିଲେ ଆରେ ନିଶାଚରେ ।୩୮।
ଜୀବନ ଦେଇ ମୋ ବାଣକୁ । ଯିବ ବାହାରି କେଉଁଠାକୁ ।୩୯।
ଯୁଦ୍ଧେ ତୁମ୍ଭଙ୍କୁ ଦେଇ ଦୁଃଖ । ଯୋଗିଙ୍କ ରଖିବ ଏ ମଖ ।୪୦।
ଯେବେ ତୁମ୍ଭର ଅଛି ସଧ । ଜମି ମୋ ସଙ୍ଗେ କର ଯୁଦ୍ଧ ।୪୧।
ଜ୍ୟେଷ୍ଠ ଭ୍ରାତଙ୍କ ପରକାରେ । ଜ୍ୟାଧର ଶର ଧରି କରେ ।୪୨।
ଜାତୁକେ ସୁମିତ୍ରା ଆତ୍ମଜ । ଯୁଦ୍ଧ କରଣେ ହେଲେ ସଜ ।୪୩।

---

(୧୭) ଶ୍ରେପ—ଶର । (୧୯) ଜଘନ୍ୟ— ଅଧମ । (୩୦) ଜମ୍ଭୁ— ବିଷସ ।
(୪୦) ମଖ—ଯାଗ ।

ଯୋଧା ମଣ୍ଡନ ରାମବାଣୀ । ଯାମିନୀଚରମାନେ ଶୁଣି ।୪୪।
ଯେ ଯାହା ଶସ୍ତ୍ର ଧରି କରେ । ଯୁଝିଲେ ରାମଙ୍କ ସଙ୍ଗରେ ।୪୫।
ଜ୍ୱଳନ ବାଣ ବିନ୍ଧି ରାମ । ଜାଳିଲେ ଦୈତ୍ୟ ତୃଣଗ୍ରାମ ।୪୬।
ଯୋଡ଼ିକ ବାଣେ ସୁବାହୁର । ଜୀବନ ଦେଲେ ଯମ କର ।୪୭।
ଜ୍ୟାଧରେ ବାତବାଣ ସନ୍ଧି । ଜବନେ ମାରିଚକୁ ବିନ୍ଧି ।୪୮।
ଯୋଜନ ଶତକରେ ନେଇ । ଜଳଧିଜଳେ ଦେଲେ ଥୋଇ ।୪୯।
ଜାତୁକେ ଲକ୍ଷ୍ମଣ ହର୍ଯ୍ୟକ୍ଷ । ଯାତୁଧାନଙ୍କ କରି ବକ୍ଷ ।୫୦।
ଜବର ମୂନ ନଖେ ଚିରି । ଜୀବ ମୁକୁତା ନେଲେ ଜ୍ୱରି ।୫୧।
ଯେତେ ନୈରୁତେ ଆଞ୍ଜି ଥିଲେ । ଯୁଝି ନପାରି ପଳାଇଲେ ।୫୨।
ଯଜ୍ଞଶ ଗାଧିଙ୍କ ନନ୍ଦନ । ଯାଗକୁ କଲେ ସମାପନ ।୫୩।
ଜରିବର୍ହାନେ ତପସ୍ୱୀ କାଳେ । ଜନ୍ମାଇ ମୋଦ ହୃଦସ୍ଥଳେ ।୫୪।
ଜାତି ମଲ୍ଲିକା ବରଷିଣ । ଜଗଣ୍ଣି ସଣ୍ଣି କଲେ ପୃଷ୍ଟି ।୫୫।
ଜୟ ଶବଦ ମୁଖେ ଗାଇ । ଯେ ଯାହା ପୁରରେ ହେଲେ ଯାଇ ।୫୬।
ଯେତେକ ଅସିଥିଲେ ଋଷି । ଜଳଦ ଶ୍ୟାମଙ୍କୁ ପ୍ରଶଂସି ।୫୭।
ଯାହାର ଆଶ୍ରମେ ସେ ମିଳି । ଜପିଲେ ହରିପଦ ଭଜି ।୫୮।
ଜୀବାକ୍ଷ ଆଦ୍ୟ ସ୍ୱାଦ ଫଳ । ଜମାଇଁ ତହୁଁ ଗାଧିବାଳ ।୫୯।
ଯାଚନ୍ତେ ଶ୍ରୀରାମ ଲକ୍ଷ୍ମଣ । ଜୋଗଣ କଲେ ତତକ୍ଷଣ ।୬୦।
ଯାମିନୀ ଦିନ ହୋନ୍ତେ ଶେଷ । ଯତି କହିଲେ ଏହି ଭାଷ ।୬୧।
ଜନକ ନୃପ ମିଥିଳାରେ । ଜାନକୀ ବିବାହ ଅର୍ଥରେ ।୬୨।
ଜନଈନଙ୍କୁ ଡ଼ାକି ଆଣି । ଜ୍ୟାଧର ଧରିଅନ୍ତି ପାଣି ।୬୩।
ଜନକ ବଡ଼ ଭାଗ୍ୟବନ୍ତ । ଜଗତେ ତାଙ୍କ ନାମ ଖ୍ୟାତ ।୬୪।
ଯୋଗୀ ପଣରେ ତାଙ୍କପରି । ଜଣେ ନଥିବେ ତିନି ପୁରି ।୬୫।
ଯାଗ ସେ ଦିନେ ଇଚ୍ଛି ମତି । ଯୋଚି ହଳକୁ ଚଷୁ କ୍ଷିତି ।୬୬।
ଜଳଜାଳୟାଙ୍କର ପ୍ରାଏ । ଜନ୍ମିଲେ ସୀତାରୁ ସୁତାଏ ।୬୭।
ଜାନକୀ ବୋଲି ତାଙ୍କୁ ନାମ । ଜାତକ ଦେଲେ ବହୁ ପ୍ରେମ ।୬୮।
ଯୌବନାବସ୍ଥା ହୋନ୍ତେ ଏବେ । ଯାଗ ଆରମ୍ଭିଛନ୍ତି ଭବେ ।୬୯।
ଯେବେ ସେଠାକୁ ଆମ୍ଭେ ଯିବା । ଯଜ୍ଞକୁ ଲୋଚନେ ଦେଖିବା ।୭୦।

---

(୫୦) ହର୍ଯକ୍ଷ—ସିଂହ, କରି—ହସ୍ତୀ । (୫୨) ନୈରୁତ—ରାକ୍ଷସ ।
(୬୦) ଯୋଗଣ—ଭୋଜନ ।

ଜମ୍ବୁଦ୍ୱୀପରେ ନରପତି । ଯେତେଛନ୍ତି ସେ ଆସିଛନ୍ତି ।୭୧।
ଯଦ୍ୟପି ତୁଲେ ତୁମ୍ଭେ ଦେଖି । ଯିବ ଅଯୋଧା ହୋଇ ସୁଖୀ ।୭୨।
ଜୀମୂତ ଶ୍ୟାମ ତାହା ଶୁଣି । ଜଣାଇଁଲେ ହେ ମୁନିମଣି ।୭୩।
ଯାଇ ଦେଖିବ ନୃପଗଣ । ଜୁଡ଼ରେ କର ପରସ୍ମାଣ ।୭୪।
ଜିତ ସୁମାଳ ଘନ ଏତେ । ଜଲପି ତପିଙ୍କ ପୁରତେ ।୭୫।
ଯଦ୍ୟପି ଲକ୍ଷ୍ମଣଙ୍କ ତୁଲେ । ଯିବା ନମିତ୍ତେ ସଜ ହେଲେ ।୭୬।
ଯତି ତା ଦେଖି ଉଠି ବେଗେ । ଯାହାଙ୍କୁ କଲେ ବନ ଭାଗେ ।୭୭।
ଯୋଗୀଶ ଗୌତମ ଆଶ୍ରମେ । ଯାଇ ପ୍ରବେଶ ହେଲେ କ୍ରମେ ।୭୮।
ଜାତି ସହିତେ ପୁଷ୍ପପନ୍ତି । ଜନ୍ମାଜନ୍ମରେ ଫୁଟିଛନ୍ତି ।୭୯।
ଜନ୍ତୁଙ୍କେ ହୋଇଅଛୁ ହୀନ । ଜନଙ୍କ ପୁଣି ହରେ ମନ ।୮୦।
ଯେଉଁ ଆଶ୍ରମ ଏହୁ ରୂପେ । ଜମ୍ବାଳଜାକ୍ଷ ଦେଖି ଆପେ ।୮୧।
ଯତିଙ୍କି ପୁଚ୍ଛିଲେ ଏ ଭାଷ । ଜାଙ୍ଗଳ ନାମ ଅଟେ କସ ।୮୨।
ଜଗତ କରତା ଦୁଷ୍ଟାସୁ । ଜନ୍ମାଇଁ ସନ୍ତୋଷ ହୃଦସୁ ।୮୩।
ଜଲଦ ଶ୍ୟାମଙ୍କୁ ଋହିଁଣ । ଜଲ୍ପନା କଲେ ଏ ବଚନ ।୮୪।
ଯୋଗିଏ ଗଉତମ ନାମେ । ଯୁଗାଦ୍ୟେ ଥିଲେ ଏ ଆଶ୍ରମେ ।୮୫।
ଯୋଷାଏ ଅହଲ୍ୟା ନାମେଣ । ଜାୟା ତାଙ୍କର ଥିଲେ ପୁଣ ।୮୬।
ଜିଷ୍ଣୁ ତା ସୌନ୍ଦର୍ଯ୍ୟକୁ ଦେଖି । ଜଟେଶ ଢିଷେ ହେଲେ ଦୁଃଖୀ ।୮୭।
ଯତିଙ୍କ ଛିଦ୍ର ଇଚ୍ଛି ଚିତ୍ତେ । ଜାଲକେ ଜଗିଥାନ୍ତି ନିତ୍ୟେ ।୮୮।
ଜମ୍ବାଳମାଳ ଦନେ ମୁନି । ଯାନ୍ତେ ସ୍ନାନାର୍ଥେ ଲୋଟା ଘେନି ।୮୯।
ଜମ୍ଭାରି ତାଙ୍କ ରୂପେ ଆସି । ଯୋଷାଙ୍କୁ ରତି କଲେ ରସି ।୯୦।
ଯଥାବଧିରେ ଗଉତମ । ଜହ୍ନୁ ସୁତାରେ ସାରି ସ୍ନାନ ।୯୧।
ଜଳ କଳସ ଧରି କରେ । ଯାଇ ମିଳିଲେ ଆଶ୍ରମରେ ।୯୨।
ଜାଣି ତା ଇନ୍ଦ୍ର ଓତୁ ରୂପ । ଜଳାବାଟରେ ଗଲେ ଧାପେ ।୯୩।
ଯୋଗେ ତା ହେଜ ମହର୍ଷି । ଜବେ ଏ ଶାପ ଦେଲେ ରୋଷି ।୯୪।
ଯୋନି ସହସ୍ର ଦେହେ ବହ । ଯେଣୁ ଭଗରେ କଲ ସ୍ନେହ ।୯୫।
ଜିଷ୍ଣୁ ଦେହରେ ଦଶ ଶତ । ଯୋନି ହୁଅନ୍ତେ ପରାପତ ।୯୬।
ଯୁକ୍ତ ହୋଇ ଯେ ଲଜ୍ଜା ଭରେ । ଯାଇ ଲୁଚିଲେ ମାନସରେ ।୯୭।

---

(୮୮) ଜାଲକ—ଗବାକ୍ଷ । । (୮୯) ଜମ୍ବାଳମାଳ—ନଦୀକୁ ।
(୯୩) ଓତୁ—ବିରାଡ଼ି ।

ଜାଣି ଏ କଥା ଧାତା ଯୋଗେ । ଜବେ ମିଳାଇଲେ ମୁନି ଆଗେ ।୯୮।
ଜଣା କରନ୍ତେ ବହୁ ରୂପେ । ଜୂଷ୍ଟ ହୋଇ ସେ ଯନ୍ତ ଆପେ ।୯୯।
ଜଳ୍ପିଲେ ପୁରନ୍ଦର ଗାତ୍ର । ଯୋନି ସହସ୍ର ହେଉ ନେତ୍ର ।୧୦୦।
ଜଳଜାସନ ତାହା ଶୁଣି । ଜୟନ୍ତଜନକକୁ ଆଣି ।୧୦୧।
ଜ୍ୟୋତ କରାଇ ଯୋନି ଯାକ । ଯାଅ ବୋଲନ୍ତେ ପୁରନାକ ।୧୦୨।
ଜଟିଳେଶଙ୍କୁ ପୁରୁହୂତ । ଜୁହାର ହୋଇ ପାରଥିତ ।୧୦୩।
ଯାଉଛୁ ବୋଲିକରି କହି । ଯାଇ ମିଳିଲେ ସ୍ୱର୍ଗମହୀ ।୧୦୪।
ଯଶୋବନ୍ତୀକ ବ୍ରହ୍ମା ମଧ୍ୟ । ଯାତରା କଲେ ବହୁ ସଧ ।୧୦୫।
ଯୁଗଳ ପଦ ସେ ବ୍ରହ୍ମାଙ୍କ । ଜପିଣ ଦ୍ୱାଦଶି ଯାକ ।୧୦୬।
ଯାବନ୍ତ ପଦଙ୍କର ଆଦ୍ୟେ । ଜବର୍ଣ୍ଣ ରଖି ନାନା ଭେଦେ ।୧୦୭।
ଜାନକୀ ପତିଙ୍କର ଖ୍ୟାତ । ଜଳପେ ଭକ୍ତରାମ ଯନ୍ତ ।୧୦୮।

ଇତିଶ୍ରୀ ଜାନକୀଶ ବିଳାସ ରାମାୟଣେ ଶିବଶିବା ସମ୍ବାଦେ ଆଦିକାଣ୍ଡେ
ନାମ ପଞ୍ଚମ ଅଧ୍ୟାୟ ।

---

## ଷଷ୍ଠ ଅଧ୍ୟାୟ

ତ୍ରିପୁରାରି ଉବାଚ

ଜଗତ ହନ୍ତା ତ୍ରିପୁରାରି । ଜଳ୍ପନ୍ତି ଜାୟା ଆଗେ ସ୍ମରି ।୧।
ଜିଷ୍ଣୁଙ୍କୁ ଏ ରୂପରେ କରି । ଯାନ୍ତେ କୁଟୀକି ତପଚାରୀ ।୨।
ଯୋଢ଼ ଅହଲ୍ୟା ବେନିକର । ଜଣା କଲେ ଏ ରୂପେ ଗିର ।୩।
ଯଥାର୍ଥ କହୁଅଛ ମୁନି । ଜନ୍ମାରି ତୁମ୍ଭ ରୂପ ବହି ।୪।
ଜବେ ଧର୍ଷଣା କଲେ ମୋତେ । ଜାଣିଣ ଥିଲେ ମୁଁ କହନ୍ତେ ।୫।
ଜଳଜ ପଦ ତୁମ୍ଭ ଛୁଇଁ । ଯମାଯମକୁ କରିବଇଁ ।୬।
ଯୁବତୀ କହି ଏହି ପଦ । ଜୁହାର କଲେ ଛୁଇଁ ପାଦ ।୭।
ଯତି ତ ବହିଥିଲେ କୋପ । ଜାୟାଙ୍କୁ ବହିଲେ ଏ ଶାପ ।୮।
ଯେଣୁ ତୁ ହେଲୁ ବେଶ୍ୟା ବାଳା । ଜବନେ ଏଣୁ ହୁଅ ଶିଳା ।୯।
ଯୋଷା ପୃଚ୍ଛନ୍ତେ ଶାପ ଅନ୍ତ । ଯୋଗୀ କହିଲେ ହୋଇ ଶାନ୍ତ ।୧୦।

---

(୯୯) ଜଷ୍ଟ—ଆନନ୍ଦିତ । (୧୦୩) ପାରଥିତ—ପ୍ରାର୍ଥିତ ।
(୧୦୧) ଜୟନ୍ତଜନକ—ଇନ୍ଦ୍ର । (୧୦୨) ଜ୍ୟୋତ—ଚକ୍ଷୁ ।

ଜ୍ୟେଷ୍ଠଦେବଙ୍କ ହିତାର୍ଥରେ । ଜଗବନ୍ଦନଙ୍କ ହିତରେ ।୧୧।
ଜଗତେଶ୍ୱର ଲକ୍ଷ୍ମୀସାଇଁ । ଜନ୍ମିବେ ରାମ ରୂପ ବହି ।୧୨।
ଜୀବନ ହରି ରାକ୍ଷସଙ୍କ । ଯାଗ ରଖିବେ ଗାଧେୟଙ୍କ ।୧୩।
ଜଳଜପଦ ତାହାଙ୍କର । ଯେବେ ପଡ଼ିବ ତୋ ଉପର ।୧୪।
ଯତ୍ନେ ତୁ ଥିବେ ହେବୁ ବାଳା । ଜାଣ ଅବଳା ରତ୍ନମାଳା ।୧୫।
ଜଡ଼କୁ ଆଦି ଷଡ଼ ରତୁ । ଯାକ ସହିବୁ ନାସ୍ତି କେତୁ ।୧୬।
ଯାଉଛି ମୁହିଁ ହିମବନ୍ତ । ଯେବେ ତୁ ହେବୁ ଶାପୁ ମୁକ୍ତ ।୧୭।
ଜନାର୍ଦ୍ଦନଙ୍କୁ ତୋଷି ସ୍ତବେ । ଜବେ ମିଳିବୁ ମୋର ଠାବେ ।୧୮।
ଜଲପି ଏହା ପ୍ରିୟା ଆଗେ । ଯାଇ ସେ ହେଲେ ହିମନଗେ ।୧୯।
ଯୁବତୀ ଶିଳା ହୋଇଛନ୍ତି । ଜାଣ ହେ ରାମ ଶ୍ୟାମକାନ୍ତି ।୨୦।
ଜଳଜପଦ ଦେଲେ ତୁମ୍ଭେ । ଜୀବେଶ ଶାପୁ ପାର ହେବେ ।୨୧।
ଯଟ୍ଟଣ ଏତେ ଋଷି ଭଣିଲେ । ଯାଇ ସେ ଶିଳା ଦେଖାଇଲେ ।୨୨।
ଜୂଡରେ ରାମ ରଘୁସାଇଁ । ଝଟନ୍ତେ ଶ୍ରୀପଦ ଲେଦୁ ତହିଁ ।୨୩।
ଜମ୍ଭାରି ନାରୀ ପରି ବାଳା । ଜଣେ ହୋଇଲେ ସେହି ଶିଳା ।୨୪।
ଯୋଡ଼ି ମସ୍ତକେ ହସ୍ତ ବେନି । ଜଣା କଲେ ଯେ ସୁବଦନୀ ।୨୫।
ଜୟ ହେ ଜଗତକରତା । ଜୟ କମଳା ଦେବୀ ଭର୍ତ୍ତା ।୨୬।
ଜପିଲେ ହୃଦେ ଯାଙ୍କ ନାମ । ଜପ କରନ୍ତି ବହି ପ୍ରେମ ।୨୭।
ଯାମିନୀ ଧବା ପଶୁପତି । ଯା ପଦ ବାରି ଧରିଛନ୍ତି ।୨୮।
ଯା ନାଭି ପଦ୍ମୁ ଜାତ ହୋଇ । ଜଗତ ସରଜିଲେ ବହି ।୨୯।
ଯା ଗୁଣ ଗାଇଣ ନାରଦ । ଯନ୍ତ୍ରକୁ କରନ୍ତି ଆହ୍ଲାଦ ।୩୦।
ଜମ୍ଭାରି ଆଦି ସୁର ବୃନ୍ଦେ । ଯା ହେତୁ ଛନ୍ତି ସ୍ୱର୍ଗେ ମୋଦେ ।୩୧।
ଯା ଗିରେ ଲବଣକୁ ଆଦି । ଜଳଧି ଛନ୍ତି ନୋହିଁ ବୃଦ୍ଧି ।୩୨।
ଜୀବ ଛପନ କୋଟି ହୃଦେ । ଯୋଗେ ଯେ ଛନ୍ତି ଅପ୍ରମାଦେ ।୩୩।
ଯେଉଁ ଏମନ୍ତ ରାମ ହରି । ଯୁବା କନ୍ଦର୍ପ ଦର୍ପହାରୀ ।୩୪।
ଯାମିନୀ ଧବା ତାଙ୍କୁ ମୋର । ଜୁହାର ଅଗଣିତ ବାର ।୩୫।
ଜୀମୂତ ଶ୍ୟାମ ଆଗେ ଏହା । ଜଳ୍ପି ସେ ବ୍ରହ୍ମାଙ୍କ ତନୟା ।୩୬।
ଯୋଡ଼ିଣ ବେନି କର ପଦ । ଜବନୀ ହୋଇ ହେଲେ ସ୍ଥିତ ।୩୭।

---

(୧୯) ହିମନଗେ—ହିମାଳୟରେ । (୨୩) ଲେଦୁ—ଲଦବାରୁ ।
(୨୪) ଜମ୍ଭାରି ନାରୀ—ଶଚୀ ।

ଯୁବଶ୍ରୀ ସୁନ୍ଦ ରାମ ଶ୍ରୀ । ଜୁହାର କଲେ ଯୋଡ଼ ପାଣି ।୩୮।
ଜଳ୍ପିଲେ ଆନଗା ମହାନ୍ତ । ଯାଅ ତୁମ୍ଭର ପଥ କଥ ।୩୯।
ଯଜ୍ଞାନ୍ତ ବେଦଧାତ୍ରୀ ସୁତା । ଯାନ୍ତେ ଭେଟିଲେ ନିଜ ଭର୍ତ୍ତା ।୪୦।
ଜାୟାଙ୍କୁ ଗଉତମ ଦେଖି । ଜଙ୍ଘେ ଧଇଲେ ହୋଇ ସୁଖୀ ।୪୧।
ଯେଉଁ ରୂପରେ ପୂର୍ବେ ଥିଲେ । ଜାଗଲେ ସେ ରୂପେ ରହିଲେ ।୪୨।
ଜୟନ୍ତ କହନ୍ତି ଏ ଅନ୍ତେ । ଯନ୍ତ କୌଶିକ ତହୁଁ ପ୍ରୀତେ ।୪୩।
ଯୁଗ୍ମ ରାଘବ ସହିତରେ । ଯାଇଁ ମିଳିଲେ ଗଙ୍ଗା ତୀରେ ।୪୪।
ଜାହ୍ନବୀ ନଦୀ ଦେଖି ରାମ । ଯୋଗୀଙ୍କି ପୁଚ୍ଛିଲେ ଏସନ ।୪୫।
ଜନମ କୋ ସ୍ଥାନୁ ଏ ନଦୀ । ଜଳ ରଜତ ଦିଏ ନିଧି ।୪୬।
ଜାହ୍ନବୀ ବୋଲି ମୁନିମଣି । ଜଳ୍ପନ୍ତେ ପୁଚ୍ଛିଲେ ସେ କ୍ଷଣି ।୪୭।
ଜନାର୍ଦ୍ଦନଙ୍କ ନଖ କୋଣେ । ଜାହ୍ନବୀ ଥାନ୍ତି ଅନୁକ୍ଷଣେ ।୪୮।
ଜମ୍ବୁ ଦ୍ୱୀପକୁ କେହ୍ନେ ଆସି । ଯାଦଃ ପତିରେ ଯାନ୍ତି ମିଶି ।୪୯।
ଜାଣିଥିଲେ ଏ କଥା ଯାକ । ଜଟିଳ କହ କରି ଠିକ ।୫୦।
ଜାଣିଣ ରାମଙ୍କର ମନ । ଜଳ୍ପିଲେ ଗାଧିଙ୍କ ନନ୍ଦନ ।୫୧।
ଯୁଗ ଆଦ୍ୟରେ ତୁମ୍ଭ କୂଳେ । ଜଣେ ସଗର ନାମେ ଥିଲେ ।୫୨।
ଯୁଗ୍ମ ତରୁଣି ସହସର । ଜନ୍ମିଲେ ତାଙ୍କର କୁମର ।୫୩।
ଜମାଇ ଧନେ ଦ୍ରବ୍ୟ ବୃନ୍ଦ । ଯାଗ ସେ କଲେ ଅଶ୍ୱମେଧ ।୫୪।
ଜମ୍ଭାରି ଘୋର ରୂପ ଧରି । ଯଜବ ବ୍ୟାଜେ ନେଲେ ହରି ।୫୫।
ଜଟିଳ କପିଳଙ୍କ ସ୍ଥଳେ । ଯମନେ ଘୋଡ଼ାକୁ ରଖିଲେ ।୫୬।
ଯାମିନୀ ହୋଇବାରୁ ଶେଷ । ଜ୍ୟାପତି ନ ଦେଖିଣ ଅଶ୍ୱ ।୫୭।
ଯେତେ ତାହାଙ୍କ ସୁତେ ଥିଲେ । ଜବେ ତାହାଙ୍କୁ ପଠାଇଲେ ।୫୮।
ଜଗତେ ଖୋଜ ଖୋଜ ତାଙ୍କେ । ଯାନ୍ତେ ମିଳିଲେ ଏକ ରୋକେ ।୫୯।
ଯାନ୍ତେ ଦେଖିଲେ ବଳ ତଳେ । ଜପରେ ଅଛନ୍ତି ଜଟିଳେ ।୬୦।
ଯାଗ ତୁରଙ୍ଗ ପୁଙ୍ଗ ତହିଁ । ଯନ୍ତ୍ରେ ଅଛଇ ବନ୍ଧା ହୋଇ ।୬୧।
ଜଟା ଉପାଡ଼ି କ୍ରୋଧେ ତାଙ୍କ । ଯାତନା ଦେଲେ ସେ ଅନେକ ।୬୨।
ଯତି ଗୃହିଁନ୍ତେ କୋପାନଳେ । ଜଳିଲେ ସଗରଙ୍କ ବାଳେ ।୬୩।
ଜାଣିଣ ନାରଦ ଗୋସାଇଁ । ଜଳ୍ପିଲେ ସଗରଙ୍କୁ ଯାଇଁ ।୬୪।

---

(୪୯) ଯାଦଃ ପତି—ସମୁଦ୍ର । (୫୫) ଯଜବ—ଯଜ୍ଞାଶ୍ୱ ।
(୫୬) ଯମନେ—ବାନ୍ଧି । (୫୯) ରୋକେ—ଵବରରେ ।

| | | | |
|---|---|---|---|
| ଜନେଶ ହୋନ୍ତି ଦୁଃଖମତ୍ତ | । | ଜନେ ତା ଅଶ୍ୱବନ୍ତ ନାତ୍ତ | ।୬୫। |
| ଜନକ ମହାଶୋକ ଦେଖି | । | ଜନ୍ମି ଅନେକ କଲେ ସୁଖୀ | ।୬୬। |
| ଯାଇ ଆଣିବ ମୁଁ ତୁରଗ | । | ଯାଗ ଆରମ୍ଭ କର ବେଗ | ।୬୭। |
| ଜନକ ମୋହେ କହି ଏତେ | । | ଯାହାକୁ କଲେ ସେ ତ୍ୱରିତେ | ।୬୮। |
| ଜଗତେ ବୁଲି ସେ ବଳରେ | । | ଯାଇ ପଶିଲେ ରଭସରେ | ।୬୯। |
| ଜାତବେଦାରେ ସର୍ବ ତାତ | । | ନଳନ୍ତ କଲେ ତା ଲୋକତ | ।୭୦। |
| ଜଟୀଳଙ୍କର ପଦେ ନମି | । | ଜଣା କଲେ ହେ ମୁନି ସ୍ୱାମି | ।୭୧। |
| ଜ୍ୱଳନେ ଯେଉଁମାନେ ନଷ୍ଟ | । | ଜଳନ୍ତି କେହ୍ନେ ହେବେ ଶାନ୍ତ | ।୭୨। |
| ଯଷ୍ଟୀଶ କହିଲେ ଏ ବାଣୀ | । | ଯେବେ ଗଙ୍ଗାକୁ ପାର ଆଣି | ।୭୩। |
| ଜୁଇରୁ ତେବେ ହେବେ ଶାନ୍ତ | । | ଜାଣ ହେ ବୀର ଅଶ୍ୱବନ୍ତ | ।୭୪। |
| ଯଜ୍ଞ ଘୋଡ଼ାକୁ ଘେନି ସଙ୍ଗେ | । | ଯାଇ ସେ ହେଲେ ନିଜ ନଗ୍ରେ | ।୭୫। |
| ଯାବନ୍ତ ପୀଡ଼ା ପିତାଙ୍କର | । | ଜପନେ ଜଣାଇଲେ ଖର | ।୭୬। |
| ଯଶୋଧନେଶ ତାହା ଶୁଣି | । | ଯୁକ୍ତି ନଦେଲେ ଶୋକ ମଣି | ।୭୭। |
| ଯାଗ କରଣ ସମାପକ | । | ଯାଇ ମିଳିଲେ ଅନ୍ତେ ନାକ | ।୭୮। |
| ଯେ ଅଶ୍ୱବନ୍ତ ନରନାଥ | । | ଜନ୍ମିଲେ ତାଙ୍କ ଏକ ସୁତ | ।୭୯। |
| ଜନକେ ହୋଇଣ ସେ ଇନ | । | ଜଗତ୍ତି କଲେ ସୁପାଳନ | ।୮୦। |
| ଜଣେ ନନ୍ଦନ ତାଙ୍କ ସମେ | । | ଜନ୍ମିଲେ ଭଗୀରଥ ନାମେ | ।୮୧। |
| ଜନକାନ୍ତେ ସେ ହୋଇ ରାଜା | । | ଯତ୍ନେ ପାଳନା କଲେ ପ୍ରଜା | ।୮୨। |
| ଜୁଇଷ୍ଟ ସେ ରାଜା ଏକ ଦିନେ | । | ଯୁକତ ହୋଇ ସୈନ୍ୟ ଜନେ | ।୮୩। |
| ଜାଙ୍ଗଳେ ଭ୍ରମି ମୃଗୟାର୍ଥେ | । | ଜ୍ୟାଦେକ ଦେଖି ଗୋଡ଼ାଅନ୍ତେ | ।୮୪। |
| ଜଆଦ ପଳାଇ ଆକୁଳେ | । | ଯୋଗେ ପଶିଲା ସେହି ବନେ | ।୮୫। |
| ଜ୍ୟାଭୃତ ତାର ପଛେ ଧାଇଁ | । | ଯାନ୍ତେ ପଶିଲେ ମଧ୍ୟ ତହିଁ | ।୮୬। |
| ଜ୍ୱଳନେ ଦଗ୍ଧ ହୋଇଥିବା | । | ଜନଙ୍କୁ ଦେଖି ହେଲେ ବାବା | ।୮୭। |
| ଯୁତକେ ତହୁଁ ଆସି ମନ୍ତ୍ରୀ | । | ଜାଳଙ୍କୁ କହିଲେ ଏ ଉକ୍ତି | ।୮୮। |
| ଯନ୍ତରେ ଆରୋହଣ ବାଜି | । | ଯିବାରୁ ମୃଗୟା ମୁଁ ଆଜି | ।୮୯। |
| ଜାଙ୍ଗଳେ ଦେଖିଣ ବସ୍ୱର | । | ଯାନ୍ତେ ମିଳିଲି ତା ମଧ୍ୟର | ।୯୦। |
| ଯତ୍ନେସ୍ୱ ଛନ୍ତି ତାଙ୍କ ପାଶେ | । | ଜ୍ୱଳନେ ଜଳନ୍ତି ମନୁଷ୍ୟେ | ।୯୧। |
| ଜାଣିଥିଲେ ହେ ମନ୍ତ୍ରିବରେ | । | ଜଣାଅ ମୋର ପୁରତରେ | ।୯୨। |

---

(୭୮) ନାକ--ସ୍ୱର୍ଗ । (୮୬) ଜ୍ୟାଭୃତ--ରାଜା । (୮୪) ଜ୍ୟାଦେକ—ହରିଣଟିଏ ।

ଜନଇନଙ୍କ ବାଣୀ ଶୁଣି । ଜୂଟଷେ କହିଲେ ମନ୍ତ୍ରୀ ଶ୍ରେଣି ।୯୩।
ଜନ୍ମି ପୂର୍ବରେ ଭୂମ୍ନ କୁଳେ । ଜଣେ ସଗର ନାମେ ଥିଲେ ।୯୪।
ଯୁଗ୍ମ ଷରଶ ସହସର । ଜନ୍ମିଲେ ତାଙ୍କର କୁମର ।୯୫।
ଯାଗ କରନ୍ତେ ସେ ନରେଶ । ଜୂରଣ ନେଲେ କେହି ଅଶ୍ୱ ।୯୬।
ଜାଣି ସେ ନର କୁଳପାଳ, । ଜବେ ପେଶିଲେ ସୁତବଳ ।୯୭।
ଯାନ୍ତେ ସେ ସଗରଙ୍କ ବାଲ୍ୟେ । ଯତି କପିଳ ପାଶେ ହେଲେ ।୯୮।
ଯଜବ ଦେଖିଣ ସେ ସ୍ଥାନେ । ଯୋଗିଙ୍କି ଦଣ୍ଡିଲେ ବହନେ ।୯୯।
ଜାଣୁକେ ଗୃହ୍ଣି ମୁନି ରାଏ । ଜଳଲେ ଅନଳେ ସବଏ ।୧୦୦।
ଜ୍ୟାଧବ ବୋଇଲେ କେମନ୍ତ । ଜ୍ୱଳନୁ ତାତେ ହେବେ ଶାନ୍ତ ।୧୦୧।
ଯୋଡ଼ି ମସ୍ତକେ ବେନି ପାଣି । ଜଣା କଲେ ସେ ମନ୍ତ୍ରୀ ଶ୍ରେଣି ।୧୦୨।
ଯେବେ ଆଣିବ ଗଙ୍ଗା ତେବେ । ଜନକେ ପାବନ୍ତୁ ତରିବେ ।୧୦୩।
ଯନ୍ତେ ତା ଶୁଣି ନରସାଇଁ । ଜନପଦକୁ ପାଟଣ ଦେଇ ।୧୦୪।
ଯାଇ ଗୋକର୍ଣ୍ଣ ତୀର୍ଥେ ହୋଇ । ଜପିଟଲେ ବ୍ରହ୍ମାପଦ ଦୁଇ ।୧୦୫।
ଜଳଜାସନ ତା ମାନସେ । ଜାଣି ମିଳିଲେ ନୃପପାଶେ ।୧୦୬।
ଯାମିନୀ ଦବା ତାଙ୍କ ପଦ । ଜଳଜ ଧ୍ୟାନ କରି ହୃଦ ।୧୦୭।
ଜାଉ ଶ୍ରୀ ଭକ୍ତରାମ ଦାସ । ଜଳପେ ରାମାୟଣ ରସ ।୧୦୮।

ଇତିଶ୍ରୀ ଜାନକୀଶ ବିଳାସ ରାମାୟଣେ ଶିବଶିବା ସମ୍ବାଦେ ଆଦିକାଣ୍ଡେ ନାମ ଷଷ୍ଠ ଅଧ୍ୟାୟ ।

## ସପ୍ତମ ଅଧ୍ୟାୟ

ଜଟାଭୂଷଣ ଉବାଚ

ଜଟାଭୂଷଣ ଖଟା ତେଜ । ଜଳନ୍ତ ଶାନ୍ତ ଭାବେ ମଜି ।୧।
ଯୋଗ ତେଜଣ ଭଗୀରଥ । ଜୁହାର କଲେ ଯୋଡ଼ି ହାତ ।୨।
ଜଣା କଲେ ହେ ପଦ୍ମବାଳ । ଜାଳିଲେ ମୋ ବଂଶ କପିଳ, ।୩।
ଜାହ୍ନବୀ ମତେ ଦଅ ଝାଟ । ଯାଇ ତାରିବ ପିତୃପନ୍ତ ।୪।

(୯୫) ସହସର—ସହସ୍ର । (୧) ଖଟା—ବମନ । (୩) ପଦ୍ମବାଳ—ବ୍ରହ୍ମା । (୪) ଝାଟ—ଶୀଘ୍ର ।

ଜାତକ ବାକ୍ୟ ଶୁଣି ବେଧା । ଜଳ୍ପିଲେ ବହ୍ମଣ ଶରଧା ।୫।
ଜନାର୍ଦ୍ଦନଙ୍କ ପାଦ ନଖେ । ଜାହ୍ନବୀ ରହିଛନ୍ତି (ଥାନ୍ତି) ସୁଖେ ।୬।
ଯାଅ ବିଷ୍ଣୁଙ୍କ ଠାବେ(କୁ) ଏବେ । ଜହ୍ନୁ ତନୟା ଦେବେ ଭବେ ।୭।
ଜଗତ ତାତ ଏତେ କହି । ଯାଇ ମିଳିଲେ ନିଜ ମହୀ ।୮।
ଯେ ଭଗୀରଥ ନରବଣ । ଜନାର୍ଦ୍ଦନଙ୍କୁ କଲେ ଧ୍ୟାନ ।୯।
ଜାଣି ତା ଆସି ରମାପତି । ଜଳ୍ପିଲେ ଏ ରୂପେ ଭାରତୀ ।୧୦।
ଯେଉଁ ନିମିତ୍ତେ ଆସିଅଛ । କୃତିରେ କହ ଦେବ ବତ୍ସ ।୧୧।
ଜଗଦୀଶ୍ୱରଙ୍କର ବାଣୀ । ଯତନେ ଶୁଣି ନରମଣି ।୧୨।
ଯୋଡ଼ି ମସ୍ତକେ ବେନିକର । ଜଣା କଲେ ହେ ଚକ୍ରଧର ।୧୩।
ଯେତେ ମୋହର ପିତୃକୁଳ । ଜାଳିଲେ କପିଳ ଜଟିଳ ।୧୪।
ଜାହ୍ନବୀ ତୁମ୍ଭ ପାଦେଛନ୍ତି । ଯେବେ ଦେବ ହେ ରମାପତି ।୧୫।
ଜନକମହେ ମୋର ତେବେ । ଜାତବେଦାରୁ ଶାନ୍ତ ହେବେ ।୧୬।
ଜନେଶ ଭାଷେ ଭବଗ୍ରାହୀ । ଜଳ୍ପିଲେ ଗଙ୍ଗା ଦେବି ମୁହିଁ ।୧୭।
ଜବିବହ୍ନିନ ନଦୀ ଭାରା । ଯାତନା ନ ସହିବେ ଧରା ।୧୮।
ଜଗତହନ୍ତା ତ୍ରିପୁରାରି । ଯେବେ ଧରିବେ ନିଜ ଶିରି ।୧୯।
ଜହ୍ନୁ ତନୟା ଦେବି ମୁହିଁ । ଜାଣ ସନ୍ଦେହ ଏଥି ନାହିଁ ।୨୦।
ଜଳଜଲୋଚନ ଏମନ୍ତ । ଜଳପି ହେଲେ ଅନ୍ତର୍ହିତ ।୨୧।
ଜହରକଣ୍ଠଙ୍କର ପଦ । ଜପିଲେ ତହୁଁ ନୃପଚନ୍ଦ ।୨୨।
ଜାୟା ସହିତେ ବନବାସ । ଜାଣି ତା ହେଲେ ପରବେଶ ।୨୩।
ଜଳ୍ପିଲେ ଆହେ ନରନାହା । ଯାହା ମାଗିବ ଦେବି ତାହା ।୨୪।
ଯେ ଭଗୀରଥ ନରପତି । ଜନ୍ମାଇ ହୃଦୟରେ ପ୍ରୀତି ।୨୫।
ଯୋଡ଼ିଣ କର ଯୁଗ ଭଲେ । ଜୁହାର କରି ଜଣା କଲେ ।୨୬।
ଜଟା ଝିଙ୍କନ୍ତେ କପିଳଙ୍କ । ଜାଳିଲେ ମୋର ପିତୃଲୋକ ।୨୭।
ଯାତନା ସହିପାର ଯେବେ । ଜାହ୍ନବୀ ହରି ଦେବେ ତେବେ ।୨୮।
ଜୀମୂତବାସୀ ତାହା ଶୁଣି । ଜାତରେ କଥିତ ଏ ବାଣୀ ।୨୯।
ଜାହ୍ନବୀ ଛଡ଼ନ୍ତୁ ଶ୍ରୀଧର । ଜଟାରେ ଧରିବି ମୁଁ ହର ।୩୦।
ଜଗପାଳ ତହୁଁ ବିଷ୍ଣୁ ପଦ । ଜପ କରନ୍ତେ ନିଜ ହୃଦ ।୩୧।

---

(୧୬) ଜନକମହେ—ପିତାମହେ । (୧୯) ଶିରି—ମସ୍ତକରେ ।
(୨୨) ଜହରକଣ୍ଠ—ଶିବ । (୨୯) ଜୀମୂତବାସୀ—ଶିବ ।
(୩୦) ଛଡ଼ନ୍ତୁ—ଢ଼ାଳନ୍ତୁ ।

ଜହ୍ନୁ ଇଡ଼ିଲେ ଗଙ୍ଗା ହରି । ଜହ୍ନୁ ତା ଧରିଲେ (ସୁ)ପୁରାର ।୩୨।
ଜଙ୍ଘ ବାହାର ଗଙ୍ଗା ବେଗେ । ଜବେ ପଡ଼ିଲେ ମେରୁ ନଗେ ।୩୩।
ଜାଣି ନପାରି ତହୁଁ ପଥ । ଜୀମୂତେ ରହିଲେ ସେ ପାଥ ।୩୪।
ଜାତକ ସୁମେରୁଙ୍କୁ ଭଲେ । ଜଣା କରନ୍ତେ ସେ କହିଲେ ।୩୫।
ଯେଣୁ ମୋ ଅଙ୍ଗେ ପଥ ନାହିଁ । ଜାହ୍ନବୀ ତେଣୁ ଛନ୍ତି ରହି ।୩୬।
ଜଣାଣେ ତାଙ୍କୁ ତୋଷ କରି । ଜନେଶ ଶୁଣି ସେ ଉତ୍ତର ।୩୭।
ଯୁକତ ବନପୁରେ ହୋଇ । ଜଳ୍ପିଲେ ଆଗୋ ମହାମାଇ ।୩୮।
ଯହିଁ ତହିଁରେ ତୁମ୍ଭେ ରହ । ଜଗ୍ମାକୁ ଏବେ ବହି ବହ ।୩୯।
ଜାହ୍ନବୀ ବୋଇଲେ ହେ ରାଜ । ଜମ୍ଭଭେଦଙ୍କ ଆଣ ଗଜ ।୪୦।
ଯେବେ ହାଣିବେ ଦନ୍ତେ ଗିରି । ଯିବଇ ତେବେ ମୁଁ ବାହାରି ।୪୧।
ଯାଇ ସ୍ୱର୍ଗକୁ ନରମଣି । ଜିଷ୍ଣୁଙ୍କୁ କହିଲେ ଏ ବାଣୀ ।୪୨।
ଜଳୁଛନ୍ତି ମୋ ପିତାମହେ । ଜାହ୍ନବୀ ହରି ଦେଲେ ସ୍ନେହେ ।୪୩।
ଜଟାରେ ପଡ଼ି ଶିବଙ୍କର । ଯାଇ ପଡ଼ିଲେ ମେରୁଧର ।୪୪।
ଯୋ ଐରାବତ ଗଜବର । ଜବନେ ଦିଅ ସୁନାଶିର ।୪୫।
ଜମ୍ଭାରି ବୋଇଲେ ଗଜକୁ । ଜଳ୍ପନେ କରି ସନ୍ତୋଷକୁ ।୪୬।
ଜାତକ ଗଜ ଆଗେ ହୋଇ । ଜଣାନ୍ତି ହୋଇଣ ବଚନାଇ ।୪୭।
ଜମ୍ବୁ ପର୍ବତ ଫୋଡ଼ନରେ । ଯିବା ଆସ ମୋ ସଙ୍ଗତରେ ।୪୮।
ଜିଷ୍ଣୁବାହନ ତାହା ଶୁଣି । ଜଳ୍ପିଲେ ଆହେ ନୃପମଣି ।୪୯।
ପାଇଣ ଗଙ୍ଗାକୁ ଚତ୍ୱର । ଜାୟା ହେବେ କି ସେ ମୋହର ।୫୦।
ଯିବି ମୁଁ ତେବେ ଏଠାରୁ । ଯାଅ ଅଯୋଧ୍ୟା ଜନଗୁରୁ ।୫୧।
ଜଗତ୍ପତି ତହୁଁ ଗମି । ଜହ୍ନୁସୁତାଙ୍କୁ କହେ ନମି ।୫୨।
ଯୁକ ବୋଇଲେ ଗଜରାଜା । ଯେବେ ମୋ ଗଙ୍ଗା ହେବ ଭାର୍ଯ୍ୟା ।୫୩।
ଜଡ଼ତରେ ସେଠାକୁ ମୁହିଁ । ଯିବ ନୋହିଲେ ନ ଯିବଇଁ ।୫୪।
ଜାହ୍ନବୀ ବୋଇଲେ ତା ଶୁଣି । ଜାଅ ହେ ନୃପ ଚୂଡ଼ାମଣି ।୫୫।
ଯାତନା ସହିଲେ ସେ ମୋର । ଜାୟା ମୁଁ ହେବି ଗଜଙ୍କର ।୫୬।
ଯଶୋଧନ ତା ଶୁଣି ବେଗେ । ଯାଇ କହିଲେ ଗଜ ଆଗେ ।୫୭।
ଯେବେ ସହିବ ଗଙ୍ଗା ଭରା । ଜବେ ହେବେ ସେ ତୁମ୍ଭ ଦାରା ।୫୮।
ଜିଷ୍ଣୁ ବାହନ ତହୁଁ ତୋଷେ । ଯାଇଁ ମିଳିଲେ ମେରୁ ପାଶେ ।୫୯।

---

(୩୩) ନଗ—ପର୍ବତ । (୩୪) ଜୀମୂତ—ପର୍ବତରେ । (୩୪) ପାଥ—ଜଳ ।

ଜୀମୂତ ପ୍ରାଏ ଗର୍ଜି କର । ଜୀମୂତେ ଚୌଦନ୍ତ ପ୍ରହାର ।୬୦।
ଯହୁଁ ଝିଙ୍କିଲେ ଦନ୍ତରାଜ । ଜବେ ଦନ୍ତେକ ଗଲେ ଭଜ ।୬୧।
ଜମ୍ବୁରୁ ଅମ୍ବୁ ତିନ ଧାର । ଜନ୍ମିଲେ ତନ୍ବୀ ହୋଇ ଘୋର ।୬୨।
ଜହ୍ନୁ ତନୟା ସରସ୍ୱତୀ । ଯମୁନା ନାମେ ତିନ ମୂର୍ତ୍ତି ।୬୩।
ଜମ୍ଭାରି ବାହନ ଉପରେ । ଜାହ୍ନବୀ ପଡ଼ିଲେ ମଉଳରେ ।୬୪।
ଜାଣି ନପାରି କୂଳପଥ । ଜଳେ ଭ୍ରମିଲେ ଐରାବତ ।୬୫।
ଯୋଜନ ପଞ୍ଚାଶ ଅନ୍ତରେ । ଯାଇ ଲଗିଲେ ପ୍ରସ୍ତ(ତ)ରରେ ।୬୬।
ଯୁକ୍ତ କ୍ରୀଡ଼ାରେ ହୋଇ ଭଲେ । ଜଗ୍ରହ୍ମାନଙ୍କ ପୁରେ ହେଲେ ।୬୭।
ଜନେଶ ଆଗେ ଯାଉଥିଲେ । ଯାନ୍ତି ବିଶ୍ରୋତା ପଛେ ଭଲେ ।୬୮।
ଜଣେ ସେ କାଳେ ଶୁଣ୍ଡି ଆଣୀ । ଯାଉଥିଲେ ସେ ଜଳ ଆଣି ।୬୯।
ଜଳ ଆସିବା ଦେଖି ସେହି । ଜବେ ପାତିଲେ ଭାଣ୍ଡ ନେଇ ।୭୦।
ଜାହ୍ନବୀ ଭାଣ୍ଡେ ପଶୁ ଦେଖି । ଜନେଶ ବୋଇଲେ ହେ ସଖୀ ।୭୧।
ଯୋ ଅମ୍ବ(ମ୍ବୁ)ସ୍ଥିତ ତୁମ୍ବ କୁମ୍ଭ । ଜଜମ୍ଭ ପତରମ୍ଭ ଦମ୍ଭ (?) ।୭୨।
ଜ୍ୟାପତି ଭରଣ୍ଡ ଏରୂପେ । ଜଳ୍ପ(ନ୍ତ)ନ୍ତେ ଆରତେ ସମୀପେ ।୭୩।
ଯତ୍ନେ ଶୁଣି ସେ ଶୁଣ୍ଡି ଆଣୀ । ଜଆରେ ଡ଼ାକ ଦେଲେ ପାଣି ।୭୪।
ତହୁଁ ସେ ଶୁଣ୍ଡି ଆଣୀ କୁମ୍ଭ । ଜାତ ହୋଇଲେ ଗଙ୍ଗା ଅମ୍ବୁ ।୭୫।
ଜଗତେ ସୁରା ସୁରୀ ନାମ । ଜ୍ୱଳିତ ହେଲେ ତହୁଁ ଭ୍ରମ ।୭୬।
ଜନେଶ ଗଙ୍ଗା ଘେନ ସାଥ । ଯାଅନ୍ତେ କେତ୍ତୁ ଦୂର ପଥ ।୭୭।
ଯତ୍ଏ ଜହ୍ନୁ ନାମେ ବସି । ଜ୍ୟାମାରେ ସ୍ନାନକର୍ମ ଶେଷି ।୭୮।
ଯୁକତେ ସନ୍ଧ୍ୟା କରୁଥିଲେ । ଜଳ ଦେଖନ୍ତେ ଧରି ଭଲେ ।୭୯।
ଜମନ କଲେ ଚନ୍ଦ୍ରକର । ଜାଣି ତା ତତ୍ତ୍ୱେ ଦଣ୍ଡଧାରୀ ।୮୦।
ଜଣା କରନ୍ତେ ସ୍ତୁତି ଗିର । ଜୁଷ ହୋଇ ସେ ଯଜ୍ଞବର ।୮୧।
ଜାନୁ ଚିରଣ କଲେ ଜନ୍ମ । ଜାହ୍ନବୀ ବୋଲି ତେଣୁ ନାମ ।୮୨।
ଯୋଜନ ପନ୍ଦର ସରଣୀ । ଯାନ୍ତେ ସେ ଅନ୍ତେ ଗଙ୍ଗାରାଣୀ ।୮୩।
ଜାଙ୍ଗେଲ ଗାଈଙ୍କି ଚରାଇ । ଜଣେ ଗୋପାଳ ଥିଲେ ରହି ।୮୪।
ଜାହ୍ନବୀ ବୋଲି ଗାଈ ନାମ । ଯାଉ ସେ ଦୂର ଦେଖି ତୃଣ ।୮୫।
ଯତନେ ବଜାଇ ମୁରଲୀ । ଜବନେ ଡ଼ାକୁ ନାମ ତୋଳ ।୮୬।

---

(୭୬) ସୁରା—ମଦ୍ୟ, ସୁରୀ—ଦେବୀ । (୮୦) ଜମନ—ଭକ୍ଷଣ ।
(୮୧) ଜୁଷ—ଆନନ୍ଦ ।

ଜହ୍ନୁ ତନୟା ସେହି ସ୍ଥନେ । ଯାଇ ମେଳିଲେ ଘୋରବନେ ।୮୭।
ଜନେନ୍ଦ୍ର ବୋଇଲେ ବିନୟେ । ଯାଉଛ କେଉଁଠାକୁ ମାଏ ।୮୮।
ଜଳ୍ପିଲେ ଗଙ୍ଗା ଆହେ ବୀର । ସ୍ମୃତରେ ପଦ୍ମକାଳ କର ।୮୯।
ଯାତବ୍ର କରୁଥିଲେ ବାହ୍ୟ । ଯିବ ତା ଶୁଣି ପଛେ ମୁହିଁ ।୯୦।
ଜହ୍ନୁଳ କର ନରପତି । ଜଘନେ ବାହ୍ୟ କଲେ ଗତି ।୯୧।
ଯେଣୁ ସେ କାଳ ବଜାଇଲେ । ଜାହ୍ନବୀ କାଳନାମ ହେଲେ ।୯୨।
ଜନପାଳକ ପଛେ ତହୁଁ । ଜଗଦୀଶ୍ୱରପଦୀ ଯାଉଁ ।୯୩।
ଯହିଁରେ ସଗରଙ୍କ ବାଳେ । ଜାତବେଦାରେ ସଦା ଥିଲେ ।୯୪।
ଯୋଗେ ପ୍ରବେଶ ତହିଁ ବେଗେ । ଯେ ଭଗୀରଥ ତାଙ୍କ ସଙ୍ଗେ ।୯୫।
ଜ୍ୱଳନେ ପଶିଣ ସେ କାଳ । ଯାଦଃପତିରେ ହେଲେ ମେଳ ।୯୬।
ଜଗତେ ସେ ଧନୁ ସଗର- । ଜନେଶ କୀରତି ସାଗର ।୯୭।
ଯେତେ ସେ ସଗରଙ୍କ ପୋୟେ । ଯାଇ ବସିଲେ ଦେବାଳୟେ ।୯୮।
ଜାହ୍ନବୀ ବୋଲି ଏହା ନାମ । ଜାଣ ହେ ରାମ ରଘୁତ୍ତମ ।୯୯।
ଜଟିଲ କହି ଏ ରୂପରେ । ଯାଇ ବସିଲେ ତରଣୀରେ ।୧୦୦।
ଜଗତତନ୍ତ୍ରର ରଘୁ ସୁତ । ଜଘନ୍ୟଜନେ ହୋଇ ସୁତ ।୧୦୧।
ଯିବାର କାଳେ ନାବଠାକୁ । ଜାଳିକ କହିଲେ ରାମଙ୍କୁ ।୧୦୨।
ଜାଣିଛୁ ମୁହିଁ ଭଲେ ହୃଦ । ଯିବାରୁ ବାଜି ତୁମ୍ଭ ପଦ ।୧୦୩।
ଜାଙ୍ଗଳେ ପଡ଼ିଥିବା ଶିଳା । ଯୋଷା ତତକ୍ଷଣେ ହୋଇଗଲା ।୧୦୪।
ଜଳେ ନ ଧୋଇ ପଦବେନି । ଯେବେ ବସିବ ମୋ ତରଣୀ ।୧୦୫।
ଯୁବତୀ ହୋଇବ ଅବଶ୍ୟ । ଜୀବିକା ମୋର ହେବ ନାଶ ।୧୦୬।
ଯୋ ରାମ ନାବିକ ତାହାଙ୍କ । ଯୁଗଳ ପଦ ପୁଣ୍ଡରୀକ ।୧୦୭।
ଜପି ଭକତ ରାମ ଦାସ । ଜଳପେ ରାମାୟଣ ରସ ।୧୦୮।

ଇତିଶ୍ରୀ ଜାନକୀଶ ବିଳାସ ରାମାୟଣେ ଶିବଶିବା ସମ୍ବାଦେ ଆଦିକାଣ୍ଡେ
ନାମ ସପ୍ତମ ଅଧ୍ୟାୟଃ ।

(୯୦) ବାହ୍ୟ—ବାଇ, ବଜାଇ । (୯୬) ଯାଦଃପତି—ସମୁଦ୍ର ।

# ଅଷ୍ଟମ ଅଧ୍ୟାୟ

## ଈଶାନ ଉବାଚ

ଜୀମୂତ ସୁତାଙ୍କୁ ଈଶାନ । ଜାନୁ ଉପରେ ବସାଇଣ ।୧।
ଜ ବର୍ଣ୍ଣ ରଖି ପଦ ଆଦ୍ୟେ । ଜଳ୍ପନ୍ତି ରାମ କଥା ମୋଦେ ।୨।
ଜଳପି ଏତେ ସେ ଧୀବର । ଜହ୍ନୁ ସୁତାଙ୍କ ଅଣି ନୀର ।୩।
ଯତ୍ନେ ରାମଙ୍କ ପଦ ଧୋଇ । ଜଳ ସିଞ୍ଚିଲେ ଶିରେ ନେଇ ।୪।
ଜେମନ କରି କଟୁ ଭାବେ । ଜୂଷକୁ କରାଇଲେ ସ୍ତବେ ।୫।
ଯବୀୟ ସହିତେ ରାଘବ । ଯାଇଣ ଆରୋହନ୍ତେ ନାବ ।୬।
ହୃଷ୍ଟ ମନେ ସେ କୈବରତ । ଯତନେ ଧରି କରେ କାତ ।୭।
ଜାୟା ସହିତେ ବାହି ତରି । ଜମ୍ବାଳିନୀଙ୍କି କଲେ ପାରି ।୮।
ଜଳଦ ଶ୍ୟାମଳ ସେ କାଳେ । ଜାଲଧାରିଙ୍କି ଗୃହ୍ନିଁ ଭଲେ ।୯।
ଜଳ୍ପିଲେ ଜାୟା ବନ୍ଧୁ ଭୁଟଲ । ଯାଇଣ ବସ ସ୍ୱର୍ଗ ଆଟଳ ।୧୦।
ଜମ୍ଭାରି ବଚନେ ସେ କାଳ । ଯାନେକ ମିଳିଲା ସେ ସ୍ଥଳ ।୧୧।
ଜାତେ ସେ ଧୀବର ନାୟକ । ସେତେକ ବନ୍ଧୁ ବର୍ଗ ତାଙ୍କ ।୧୨।
ଯୁତ ହୋଇଣ ତାହାଙ୍କରେ । ଯାଇ ବସନ୍ତ ସେ ଯାନରେ ।୧୩।
ଜୂପଥରେ ସେ ରଥ ଚଳି । ଜିଷ୍ଣୁ ଭୁବନେ ଗଲା ମିଳି ।୧୪।
ଯାନୁ ଓହ୍ଲାଇ କୈବରତ । ଜପିଲେ ବସି ରଘୁସୁତ ।୧୫।
ଯନ୍ତ କୌଶିକ ଏଥୁ ଅନ୍ତେ । ଯେ ରାମ ଲକ୍ଷ୍ମଣ ସହିତେ ।୧୬।
ଯାତ୍ରା କରିଣ ଉଚ୍ଛପୁଲେ । ଜନକ ନଗରେ ମିଳିଲେ ।୧୭।
ଜୀମୂତ ଶ୍ୟାମ ଆସିବାର । ଜାଣି ଧାଇଁଲେ ପୁର ନର ।୧୮।
ଯୁବା ବୟସୀ ନାରୀମାନେ । ଯୁକତ ହୋଇଣ ମଦନେ ।୧୯।
ଜ୍ୟୋତରେ ଦେଖିବା ବୋଲିଣ । ଜୁଟରେ କଲେ ପରିପୂଣ ।୨୦।
ଜଗତୀ ଉପରେ କେଉଁଠି । ଯୋଗୀ ପଣରେ ଦେଲେ ଦୃଷ୍ଟି ।୨୧।
ଜ୍ୟାରୂଢ଼ ଚଢ଼ି କେଉଁ ନାରୀ । ଜାଣିଲେ ଦେଖୁ ସ୍ୱେ ହଟ୍ଟର ।୨୨।

---

(୧) ଜୀମୂତ ସୁତା—ପାର୍ବତୀ । (୫) ଜେମନା—ଭକ୍ଷଣ ।
(୧୪) ଜୂ—ଦ୍ୟୁ ବା ସ୍ୱର୍ଗ ।

ଜଂଘ୍ କେ ପୃଷ୍ଠ ଦେଇ ଛେଚ । ଯୁବତୀ ସଙ୍ଗେ ଗଲେ ନାଚ ।୨୩।
ଯେ ଶୋଇଥିଲେ ଚେତା ପାଇ । ଜନ୍ମା ମାରଣ ଗଲେ ଧାଇଁ ।୨୪।
ଯୁଗ ସ୍ତନୁ କେ ବାସ କାଢ଼ି । ଜଦର କଣ୍ଠେ ଗଲେ ଜଡ଼ି ।୨୫।
ଜନସ୍ଥ ଲପୁଥିଲେ କଏ । ଜାଣିଣ ଧାଇଁଲେ ନର୍ଭୟେ ।୨୬।
ଜଳାପୁଞ୍ଜରେ କେହୁ ଗୃହିଁ । ଜଳଜ ସୁତଙ୍କୁ ନନ୍ଦଇ ।୨୭।
ଜନକ ନଗ୍ର ନବାସିମା । ଯେ ଥିଲେ ଯୁବା ସୀମନ୍ତିମା ।୨୮।
ଯେ ଯାହା ରୂପେ ଛକ ଆସି । ଜମି ଗୃହିଁଲେ କାମେ ରସି ।୨୯।
ଜନକ ନୃପ ଶିରୋମଣି । ଯତିଙ୍କ ଆଗମନ ଶୁଣି ।୩୦।
ଯାବନ୍ତ ପୂଜା ସାମଗିର । ଜମାଇ ସ୍ୱର୍ଣ୍ଣପାତ୍ରେ ଧର ।୩୧।
ଯୁତ ହୋଇଣ ଶତାନନ୍ଦେ । ଜନସ୍ଥୁ ବାହାର ଆନନ୍ଦେ ।୩୨।
ଜବନେ ମିଳ ମୁନ ପାଶେ । ଜୁହାର କଲେ ପଦ ଦେଶେ ।୩୩।
ଯଥୋକ୍ତ ବାକ୍ୟେ ପୂଜା କର । ଜଲ୍ପିଲେ ଏ ବଚନୋଚାର ।୩୪।
ଯୋ ଦୁହେଁ ଭ୍ରମ୍ମ ସଙ୍ଗେ ଛନ୍ତ । ଜନକ ଆ(ଯୁ)ଙ୍କ କେ ଅଟନ୍ତ ।୩୫।
ଜ୍ୟୋତରେ ଦେଖିଲ ମାତ୍ରକେ । ଜନ୍ମିଲ ମୋଦ ହୃଦଓଡକେ ।୩୬।
ଜାତକ ବାକରେ କୌଶିକ । ଜଲ୍ପିଲେ ଶୁଣ ହେ ଜନକ ।୩୭।
ଜନମା ସ୍ୱାଙ୍କ କଉଣକ୍ଷା । ଜନକ ଅଜଙ୍କର ବଳା ।୩୮।
ଯଜ୍ଞ ମୋ ରଖିବାର ପାଇଁ । ଯାଇ ଆଣିଲି ମାଗି ମୁହିଁ ।୩୯।
ଜୀମୂତ ପଟରେ ବରନ । ଯାହାଙ୍କ ଦ୍ୱେଷେ ଅପଘନ ।୪୦।
ଜନାର୍ଦ୍ଦନନ୍ତି ସେ ସାକ୍ଷାତେ । ଜନ୍ମିଲେ ରାମ ନାମେ ମର୍ତ୍ତ୍ୟେ ।୪୧।
ଯେ ବହିଛନ୍ତ ଗୌରବର୍ଣ୍ଣ । ଜାଣ ସେ ଅଂଶେ ନାରାୟଣ ।୪୨।
ଜନପଦେ ଏ ଗୃପଧର । ଜୀବ ହରିଲେ ତାଡ଼କାର ।୪୩।
ଯୁଦ୍ଧ କରନ୍ତେ ଦୈତ୍ୟେ ଆସି । ଜବଗେ ତାହାଙ୍କୁ ବିନାଶି ।୪୪।
ଯମ ସଦନେ ବସାଇଲେ । ଯଜ୍ଞ ମୋହର ରକ୍ଷା କଲେ ।୪୫।
ଜବେଶ ଶାଟପ ଶତାନନ୍ଦ । ଜନମା ଥିଲେ ହୋଇ ମନ୍ଦ ।୪୬।
ଜଳଜ ପଦ ଦେଇ ତହିଁ । ଯୁବତୀ କରଦେଲେ ଏହି ।୪୭।
ଜନସ୍ପର୍ଶିଙ୍କ ଶୁଭ ବାଣୀ । ଜାଣନ୍ତେ ଶତାନନ୍ଦ ମୁନ ।୪୮।

---

(୨୬) ଜନସ୍ଥ—ଘର । (୨୯) ଛକ—ଲୁଚାକର । (୩୬) ଓଡକେ—ଗୃହରେ ।
(୩୭) ବାକରେ = ବାକ୍ୟରେ, କଥାରେ । (୪୪) ଜବଗ – ଶର ।

ଜମ୍ବାଳଜାକ୍ଷଙ୍କୁ ପ୍ରଣମି । ଜପୁ କଲ୍ୟାଣ କଲେ ଋଷି ।୪୯।
ଯଜ୍ଞଙ୍କ ସଙ୍ଗେ ଚଳନ୍ତି ରାମ । ଯାଆନ୍ତେ ଦେଖିଲେ ନୃପ ଗ୍ରାମ ।୫୦।
ଜନେଶ ଚନ୍ଦ୍ରଦଶେ ରାଘବ । ଜନ୍ମାର ଫଳ ହେଲେ ଲାଭ ।୫୧।
ଜନକ ନୃପଦାର ଶ୍ରେଣୀ । ଜଲଜାକ୍ଷଙ୍କାଗତ ପୁଣି ।୫୨।
ଜଗତୀ ପରେ ଅତି ବେଗ । ଜାଣିଲେ ଦେଖି ଏ ଅନଙ୍ଗ ।୫୩।
ଜୁଆଇଁ ଆମ୍ଭ ଏ ହୋଇବେ । ଯୁକ୍ତ ନାହିଁ ଏଥି ଲବେ ।୫୪।
ଜାନକୀ କମଳ ନୟନୀ । ଜବା ଅଧରୀ ଚନ୍ଦ୍ରାନନୀ ।୫୫।
ଯାହାଙ୍କ ମନମାୟା ନାମ । ଜଳଜକର ତା ଧରଣ ।୫୬।
ଯାଇ ଅଟ୍ଟାଳି ଉପରକୁ । ଯତ୍ନେ ଦେଖନ୍ତି ଶ୍ରୀ ରାମଙ୍କୁ ।୫୭।
ଜାହ୍ନବୀଧର ପରେ ମଜ୍ଜି । ଜପିଲେ ବେନି ଆଖି ବୁଜି ।୫୮।
ଯେହ୍ନେ ଚକୋର ଚନ୍ଦ୍ର ଚାହିଁ । ଜାନକୀ ତେହ୍ନେ ମୋଦ ବହି ।୫୯।
ଜଳ୍ପିଲେ ଚାହିଁ ସଖୀମୁଖ । ଜଳଦ ବରନଙ୍କୁ ଦେଖ ।୬୦।
ଜ୍ୟା ନଭେ ନୃପରୁଷ ବ୍ରାତେ । ଜଳଜ ଉଦୟ କ ସ(ଷା)ନ୍ତେ ।୬୧।
ଜୁଟିଲେ ମନ ଏ ମୋହର । ଯେବେ ମୋ ହେବେ ଗୋ ଏ ବର ।୬୨।
ଜୁହ୍ନୁଧାରୀଙ୍କି ମୁଁ ସୁରଭି । ଜାମ୍ବୁନଦାଦ୍ୟ ରତ୍ନ ଦେବି ।୬୩।
ଯେବେ ନୋହିବେ ଏ ମୋ ପତି । ଜୀବନ ହାରିବି ଝଟିତି ।୬୪।
ଜୀବକୀ ନାରୀ ତାହା ଶୁଣି । ଜାନକୀ ଆଗେ ଏତେ ଭଣି ।୬୫।
ଯାହା କହିଲ ନାରୀବର । ଯଥାର୍ଥେ ହେବେ ଏ ତୋ ବର ।୬୬।
ଜ୍ୟାଧର କର ଭଗନକୁ । ଜାୟା ଗୋ କରିବେ ତୁମ୍ଭକୁ ।୬୭।
ଜନ୍ମ ଜନ୍ମ ଏ ତୁମ୍ଭ ପାଇଁ । ଜାଣଇଁ ଏହା କଥା ମୁହିଁ ।୬୮।
ଜଳଜାଳୟା ଭଗବାନ । ଜାତ ହୋଇଛ ବେନି ଜନ ।୬୯।
ଜାନକୀ ବୋଲେ ଶୁଣି ତାହା । ଜାଣ ଗୋ ସଖି ମନମାୟା ।୭୦।
ଜଳଜ ବୃନ୍ଦ ସୁଙ୍କ କର । ଜ୍ୟାଧର ବଢ଼ାଇ ନିଷ୍ଠୁର ।୭୧।
ଯେସନ କମଠର ପୃଷ୍ଠ । ଜମ୍ବୁ ନୋହିବେ ଭାରେ କୋଠ ।୭୨।
ଜିଆରୁ ତୋଳିବେ କେସନେ । ଜାତ ସଂଶୟ ଏଣୁ ମନେ ।୭୩।

---

(୬୧) ପୃଥିବୀ ରୂପକ ଆକାଶରେ ରାଜା ରୂପକ ତାରକାସମୂହ ମଧ୍ୟରେ ଚନ୍ଦ୍ର ଉଦୟ ହେଲେ କି । (୬୩) ଜୁହ୍ନୁଧାରୀ—ଶିବ ।
(୬୫) ଜୀବକୀ—ସେବକୀ ।

ଜାନୁରେ ଗିରି କେ ତୋଳିବ । ଯାଦଃପତିଙ୍କି କେ ପିଇବ ।୭୪।
ଜଣାନ୍ତି ମନମାୟା ଜବ । ଜଳ କୋମଳ କାଟେ ଗ୍ରାବ ।୭୫।
ଜୀମୂତ ସମ ତୂଳା ଥିଲେ । ଜ୍ୱଳନ ଜାଳି ଦ୍ୟନ୍ତି ଭଲେ ।୭୬।
ଜଳନିଧିଙ୍କ ଜଳରାଶି । ଯତି ଅଗସ୍ତି ଦେଲେ ଗ୍ରାସି ।୭୭।
ଜହ୍ନୁ ତନୟାଧର ପୁଣ । ଜହର କରିଦେଲେ ପାନ ।୭୮।
ଜୟନ୍ତ ନୃପ ହେଲା ଭବେ । ଜୀମୂତ ଶ୍ୟାମଳ ତୋଳିବେ ।୭୯।
ଜାନକୀ ନକର ସଂଶୟ । ଯୁକେ ହେବେ ସ୍ୱେ ଭୁମ୍ଭ ପ୍ରିୟ ।୮୦।
ଜନକ ଏ ଅନ୍ତେ ସରାଗେ । ଜଣାନ୍ତି ବିଶ୍ୱାମିତ୍ର ଆଗେ ।୮୧।
ଯେଉଁ ନିମିତ୍ତେ ଆସିଅଛ । ଯାବନ୍ତ କହ ଗାଧି ବତ୍ସ ।୮୨।
ଯତିଭୂପତି ତାହା ଶୁଣି । ଜୂତରେ କହିଲେ ଏ ବାଣୀ ।୮୩।
ଯେବଣ ନୃପ ଲକ୍ଷ୍ମୀକାନ୍ତ । ଜାଜ୍ୱଲ୍ୟେ ହୋଇଅଛି ଜାତ ।୮୪।
ଜିତ ଜୀମୂତ ଶ୍ୟାମ ରାମ । ଜ୍ୟା ଚଢ଼ାଇବେ ତହିଂ ଜାଣ ।୮୫।
ଜନକ ତାହା ଶୁଣି ହସି । ଜଳ୍ପିଲେ ଶୁଣ ଯତି ଶଶୀ ।୮୬।
ଯୌବନ ନୁହଁନ୍ତି ତ ଏହି । ଜ୍ୟାଧର ଧରିବେ ଏ କେହି(କାହିଁ)।୮୭।
ଜଗତ ତାତ ବେନି ପୁଣି । ଜୁଷ୍ଟରେ କହିଲେ ତା ଶୁଣି ।୮୮।
ଜଳଜଦୃଶ ରଘୁ ସୁତ । ଜଘନ୍ୟଜରେ ହୋଇ ଯୁତ ।୮୯।
ଜରାସନକୁ ଦେଖି ନେତ୍ର । ଯୁଗଳ କରିବେ ପବିତ୍ର ।୯୦।
ଯା ଭାର ନ ସହିଲେ ଶୂଳୀ । ଜନ କି ଧରିବେ ତା ତୋଳି ।୯୧।
ଜବେ ଦେଖାଅ ନୃପୋତ୍ତମ । ଯିବେ ଗ୍ରାମକୁ ଦେଖି ରାମ ।୯୨।
ଜନମ ତାତ ଏହାଙ୍କର । ଜଡ଼ ଦୁଃଖରେ ଥିବେ ଘୋର ।୯୩।
ଜନକ ତା ଶୁଣି ପଞ୍ଚସି । ଯୁଗ୍ମ ସହସ୍ର ମଲ୍ଲ ପେଶି ।୯୪।
ଜ୍ୟାଧର ମଞ୍ଜୁ ତର ଭୁଜେ । ଜ୍ୟାରେ ଘୋଷାରି ଅଣାଇଲେ ।୯୫।
ଜନକ କୌଶିକଙ୍କୁ କହେ । ଜାହ୍ନବୀଧର ନୃପଇୟେ ।୯୬।
ଯେ ଏହି ଧନୁ ପାତରି ବହି । ଜେମା ତାହାଙ୍କୁ ଦେବି ମୁହିଁ ।୯୭।
ଯମାପମକୁ ଏ ରୂପରେ । ଜାଣ କରିଛି ମୁଁ ପୂର୍ବରେ ।୯୮।
ଜନେଶ ଆସ୍ୟ ଏହା ଶୁଣି । ଜାତେ ଉଠିଲେ ନୃପପାଣି ।୯୯।
ଯାଇଣ ଲକ୍ଷ୍ମଣଙ୍କ ଭୁଜେ । ଜଘନେ ଧନୁଙ୍କୁ ମିଳିଲେ ।୧୦୦।
ଯେସନ ମତ୍ତଗଜ ପାଶେ । ଜାଙ୍ଗଳେଶ୍ୱର ମିଳେ ବେଷେ ।୧୦୧।
ଜୟନ୍ତ ନୃପ ପାଶେ ତେତେହେଁ । ଜମ୍ବାଳଜାକ୍ଷ ହେଲେ ତୂର୍ଣ୍ଣି ।୧୦୨।

ଜବଗାସନ ଦେଖି ଶ୍ୱଚଲ । ଯିବ ମୁଁ ଆଜ ଭ୍ରଜ ହେଲେ ।୧୦୩।
ଯୁଗ ଅନ୍ଦର ପଡ଼ିଥିଲ । ଜନାର୍ଦ୍ଦନଙ୍କୁ ଯା ଦେଖିଲ ।୧୦୪।
ଜୀବନ ଧନ୍ୟ ହେଲା ମୋର । ଜପି ଏତେ ସେ ନୃପବର ।୧୦୫।
ଜର୍ଜ୍ଜରେ କାର୍ମୁକ ବଷାଦେ । ଜୁହାର କଲେ ରାମ ପାଦେ ।୧୦୬।
ଜଳନ୍ତର ଭୂପତି ଗୁରୁ । ଯିବାକୁ ଛଳ ସଂସାରରୁ ।୧୦୭।
ଯୋ ରାମ ସଉମିତ୍ରି ବେନ । ଜଂପେ ତାହାଙ୍କୁ ମୋଦ ଦେନ ।୧୦୮।

ଇତିଶ୍ରୀ ଜାନକୀଶ ବିଳାସ ରାମାୟଣେ ଶିବଶିବା ସମ୍ବାଦେ ଆଦ୍ୟକାଣ୍ଡେ
ନାମ ଅଷ୍ଟମ ଅଧ୍ୟାୟଃ ।

---

## ନବମ ଅଧ୍ୟାୟ

### ଶିବ ଉବାଚ

ଜାନକୀଶଙ୍କ ଗୁଣ ଭାବ । ଜଳ୍ପନ୍ତି ଗୌରୀ ଆଗେ ଶିବ ।୧।
ଜ୍ୟେଷ୍ଠ ଭ୍ରାତଙ୍କୁ ସଉମିତ୍ରି । ଜଣା କଲେ ଏ ରୂପେ ଉକ୍ତି ।୨।
ଜ୍ୟାଧର ନଧର ଲକ୍ଷ୍ମଣ । ଜମି ଅଛନ୍ତି ରାଜାଗଣ ।୩।
ଜୁହାର କଲ ଭ୍ରାଏ ହେବ । ଯୋଗାଏ ନାହିଁ ଏହା ଦେବ ।୪।
ଜଘନ୍ୟଜଙ୍କ ଶୁଣି ଭାଷ । ଜଳଜଦୃଶ ହେଲେ ତୋଷ ।୫।
ଜନେ ଅନାଉଛନ୍ତି ମୋଦେ । ଜାକନ୍ତେ ହୁଲ ରାମ ପାଦେ ।୬।
ଯାତନା ରାମଙ୍କର ପାଇ । ଜବଗାସନ ଉଭା ହୋଇ ।୭।
ଜବେ ତା ଧରି ବାମ ହସ୍ତେ । ଜ୍ୟା ଦେବା ବୋଲି ବସୁରନ୍ତେ ।୮।
ଜଗତ୍ତି ଯୁବତ୍ତି ସେ ରୀତି । ଜାଣି ଡାକିଲେ ଆର୍ତ୍ତେ ଅତି ।୯।
ଜୟ ହେ ରାମ ଲୋକପାଳ । ଜଣା ନଯାଏ ନୃପବଳ ।୧୦।
ଯେବେ ମୋ ପରେ ନ ଦେବ ଗୁଣ । ଯିବି ମୁଁ ତେବେ ବଳିସଦ୍ମ ।୧୧।
ଜଗତ୍(ତ୍ରି) ଆର୍ତ୍ତି ଡାକ ଶୁଣି । ଜନମୋହନ ରଘୁମଣି ।୧୨।
ଜରା ଅଙ୍ଗୁଷ୍ଠେ ହୁଲ ଥୋଇ । ଜ୍ୟା ଦକ୍ଷ ହସ୍ତେ ଦେଲେ ନେଇ ।୧୩।
ଯେସନ ଯୋଲ କାଷ୍ଠ ବାଳେ । କୂଆରୁ ଉଠାଅ(ବା)ନ୍ତି ଖେଳେ ।୧୪।

---

(୧୧) ବଳିସଦ୍ମ—ପାତାଳ । (୧୩) ଜରା ଅଙ୍ଗୁଷ୍ଠ—ବୃଦ୍ଧାଙ୍ଗୁଳି ।

ଜବଗାସନ ତେତେହ୍ନେ ତୋଳ । ଯହୁଁ ଝିଙ୍କିଲେ ଗୁଣ ଟଳ ।୧୫।
ଜଗତେ ପୂରିଲ୍ଲ ସେ ଧ୍ୱନ । ଜ୍ୟାଧର ହେଲ୍ଲ ଖଣ୍ଡ ତିନ ।୧୬।
ଜର୍ବିହ୍ୱାନ ପୁରେ ଖଣ୍ଡେ । ଯାଇ ପଡ଼ିଲ୍ଲ ଅତି ଚଣ୍ଡେ ।୧୭।
ଜହ୍ନୁଗଲ୍ଲୋକେ ଖଣ୍ଡେ ସ୍ଥିତ । ଯୋ ଖଣ୍ଡ ଥିଲ୍ଲ ମୁଷ୍ଟିଗତ ।୧୮।
ଜବାପ୍ଲ ବାତେ୍ୟ ଫିଙ୍ଗୁ ରାମ । ଯୁଣାନ୍ତେ ହୋଇଲ୍ଲ ପତନ ।୧୯।
ଯେମନ୍ତ କରି ଇକ୍ଷୁଦଣ୍ଡ । ଜକ୍ଷଇ କରି ଖଣ୍ଡ ଖଣ୍ଡ ।୨୦।
ଜନ ଉତ୍ତମ ରାମ ତେତେହ୍ନେ । ଜ୍ୟାଧର ଭାଙ୍ଗିଲେ ବହନେ ।୨୧।
ଜନକ ରାଜା ତାହା ଗୃହେ । ଜେମାଙ୍କୁ ପାଶକୁ ଅଣାଇଁ ।୨୨।
ଜଲ୍ପିଲେ ତୋଷରେ ଏ ଗିର । ଯାଇଣ ରାଘବଙ୍କୁ ବର ।୨୩।
ଜାନକୀ ଘେନ ତାତାଦେଶ । ଜଗି ତ ଥିଲେ ହୋଇ ବେଶ ।୨୪।
ଯତନେ ବନମାଳା ଘେନି । ଯାହାକୁ କଲେ ହୋଇ ଭୁନ ।୨୫।
ଯେହ୍ନେ ଚୁମ୍ବକ ଗୃହେଁ ଲୁହା । ଯାଏ ବହନ ତେଜି ସ୍ପୃହା ।୨୬।
ଜାନକୀ ସେହ୍ନ ପରକାର । ଜଘନେ ହେଲେ ରାମଙ୍କର ।୨୭।
ଜନାରଦନଙ୍କୁ ସେ କାଳେ । ଜଳଜାଳୟା ଃକ (କୁ) ଭେଟିଲେ ।୨୮।
ଯେତେ ସେଠାରେ ଥିଲେ ନର । ଜପିଲେ ଚତ୍ତେ ଏ ପ୍ରକାର ।୨୯।
ଜାନକୀ ତହୁଁ ରାମ ଗଳେ । ଜାପ୍ୟମାଳାଙ୍କୁ ଲମ୍ବାଇଲେ ।୩୦।
ଜଇବାତ୍ରୁକଙ୍କୁ ବିଲୋକି । ଯେହ୍ନେ ଚକୋର ହୁଏ ସୁଖୀ ।୩୧।
ଜଳଜ ଦେଖି କବା ଅଳି । ଯେସନେ ହୋଏ ମତ୍ତୁଆଳି ।୩୨।
ଜାନକୀ ଶ୍ରୀରାମ ତେସନ । ଯୋଗ ହୋଇଲେ ସେହୁ ସ୍ଥାନ ।୩୩।
ଯାଆ ବୋଲନ୍ତେ ରାମ ଶଶୀ । ଜାନକୀ ଶୁଦ୍ଧାନ୍ତେ ପ୍ରବେଶି ।୩୪।
ଜନନୀଙ୍କର ପଦେ ଭଟିଲେ । ଜୁହାର କରି ସେ ବୋଇଲେ ।୩୫।
ଯୋଗ୍ୟତା ସୁଲକ୍ଷଣୀ ହୁଅ । ଜନମ କରି ବେନି ପୁଅ ।୩୬।
ଯୁଆଇଁ ହୋନ୍ତୁ ଚିରଞ୍ଜୀବୀ । ଯାଉ ତୋ ଦିନ ତାଙ୍କୁ ସେବି ।୩୭।
ଜାନକୀ ଆଗେ ମନମାୟୀ । ଜଣାଏ ଶୁଣ ଗୋ ସୀତାୟୀ ।୩୮।
ଯା କହିଥିଲି ମୁହିଁ ପୂର୍ବେ । ଯଥାର୍ଥ ହୋଇଲା କି ଏବେ ।୩୯।
ଜ୍ୟା ସୁତା ଶୁଣି ହୋଇ ପ୍ରୀତ । ଜଲ୍ପିଲେ ଆଗୋ ପ୍ରାଣ ମିତ ।୪୦।

---

(୧୫) ତେତେହ୍ନେ ଟଳ ପାଠାନ୍ତର । (୧୮) ଜହ୍ନୁଗଲ୍ଲୋକ—ପାତାଳ ।
(୩୦) ଜାପ୍ୟ—ଉତ୍ତମ ।